# କଥାତତ୍ତ୍ୱ : କଥାରୂପ



ଡକ୍ଟର ପ୍ରକାଶ କୁମାର ପରିଡ଼ା

# କଥାତତ୍ତ୍ୱ : କଥାରୂପ

(କ୍ଷୁଦ୍ରଗଳ୍ପର ତତ୍ତ୍ୱ ଓ ରୂପ ସମ୍ବନ୍ଧୀୟ ବିସ୍ତୃତ ବୀକ୍ଷା)

ଡକ୍ଟର ପ୍ରକାଶ କୁମାର ପରିଡ଼ା



# କଥାତତ୍ତ୍ୱ : କଥାରୂପ

ଲେଖକ : **ଡକ୍ଟର ପ୍ରକାଶ କୁମାର ପରିଡ଼ା**, ବଡ଼ସଲାରୋ, ଚାନ୍ଦୋଳ, କେନ୍ଦ୍ରାପଡ଼ା, ଓଡ଼ିଶା । ପ୍ରକାଶକ : **ଶ୍ରୀ ଦିଲୀପ କୁମାର ବେଉରା**, ବିଜୟିନୀ ପବ୍ଲିକେଶନ୍ସ, ଶଙ୍କରପୁର, ଅରୁଣୋଦୟ ମାର୍କେଟ୍, କଟକ-୧୨, ଓଡ଼ିଶା ◻ ଦ୍ୱିତୀୟ ସଂସ୍କରଣ : ୨୦୦୫ ◻ ଅକ୍ଷର ସଜ୍ଜା : ପ୍ରଜ୍ଞା ଡି.ଟି.ପି. ସେଣ୍ଟର, କଟକ ◻ ପ୍ରଚ୍ଛଦ : ବିଜୟ ସାହୁ ◻ ମୁଦ୍ରଣ : ଦି ଲକ୍ଷ୍ମୀ ପ୍ରେସ୍, ବକ୍ସି ବଜାର, କଟକ ।

◻ ମୂଲ୍ୟ : ଟ ୫୦/-



# KATHATATWA : KATHARUPA

Writer : **Dr. Prakash Kumar Parida**, Badasalaro, Chandol, Kendrapara ◻ Publisher : **Sri Dilip Kumar Beura, Bijayinee Publications,** Shankarpur, Arunodaya Market, Cuttack - 753 012 ◻ Second Edition : **2005** ◻ Type Setting : **Prajna D.T.P. Centre**, Cuttack ◻ Cover Design : **Bijay Sahoo** ◻ Printed at : **The Laxmi Press**, Buxi Bazar, Cuttack.

◻ Price : **Rs. 50/-**

## ପ୍ରାକ୍‌କଥନ

'କ୍ଷୁଦ୍ରଗଳ୍ପ' ସଂପର୍କରେ ମୋର ଆଗ୍ରହ ଦୁର୍ନିର୍ବାର । ସ୍କୁଲ ଛାତ୍ର ବେଳରୁ ଗଳ୍ପଗବେଷକ ଓ ସାହିତ୍ୟ ଅଧ୍ୟାପକ ହେବାଯାଏ ଏ ନେଇ ମୋର କୌତୁହଳ ତଥାପି ଅପ୍ରଶମିତ ।

ଡକ୍ଟର କୃଷ୍ଣଚରଣ ବେହେରା, ଡକ୍ଟର ସୌରୀନ୍ଦ୍ର ବାରିକ, ଶ୍ରୀଯୁକ୍ତ କିଶୋରୀଚରଣ ଦାସଙ୍କ ଏକକ ଗ୍ରନ୍ଥ ସମେତ ଡଃ ଗଙ୍ଗାଧର ବଳ, ଡଃ ସର୍ବେଶ୍ୱର ଦାସ, ଡଃ ନୀଳାଦ୍ରୀଭୂଷଣ ହରିଚନ୍ଦନ, ଡଃ ବିଭୂତି ପଟ୍ଟନାୟକ, ଡଃ ବୈଷ୍ଣବଚରଣ ସାମଲ ପ୍ରମୁଖଙ୍କ ସାହିତ୍ୟ-ସ୍ୱରୂପ ବିବେଚନା ଗ୍ରନ୍ଥଗୁଡ଼ିକର ତନ୍ନାମ ବିଶିଷ୍ଟ ଅଧ୍ୟାୟଗୁଡ଼ିକର ପଠନରୁ ମୋର କୌତୁହଳ ଆହୁରି ଉଦ୍ଦୀପ୍ତ; ଜିଜ୍ଞାସା ସଂତୃପ୍ତ ନୁହେଁ ।

ସେସବୁର ପଢ଼ାପଢ଼ି ସହିତ କ୍ଷୁଦ୍ରଗଳ୍ପର ଅଧ୍ୟୟନ ଓ ଅନୁଶୀଳନରେ ମୋର ତିରିଶ ବର୍ଷର ସଂସ୍ରବରୁ ମୁଁ କେତେକ ଦିଗ, ବାଗ ଓ ଭାଗ ସଂପର୍କରେ ବ୍ୟକ୍ତିଗତ ଭାବନା କରିପାରିଛି । ତାହାକୁ ମୌଳିକ କୁହାନଯାଉ, ତାହାର ପ୍ରକାଶଶୈଳୀ କିନ୍ତୁ ମୋର ବ୍ୟକ୍ତିଗତ ।

'କଥାତତ୍ତ୍ୱ : କଥାରୂପ'' ନାମରେ ତାହାକୁ ୮୪ ପୃଷ୍ଠାରେ ଗ୍ରନ୍ଥିତ କରିଛି । ଛାତ୍ର, ଗବେଷକ, ଅଧ୍ୟାପକ ଓ ଗାଳ୍ପିକ ବଂଧୁଗଣ ସାମାନ୍ୟ ହେଲେବି ଉପକୃତ ହେବେ ଆଶା ରଖିଛି ।

ବିଦ୍ୟା ପ୍ରକାଶନ-କଟକର ଶ୍ରୀ ସୁଧାଂଶୁ କୁମାର ପ୍ରଧାନ ଏହାର ପ୍ରଥମ ମୁଦ୍ରଣ କରିଥିଲେ ୧୯୯୬ ମସିହାରେ । ଦ୍ୱିତୀୟ ସଂସ୍କରଣ ପ୍ରକାଶ ବିଜୟିନୀ ପବ୍ଲିକେଶନ୍‌ର କର୍ତ୍ତା ଶ୍ରଦ୍ଧେୟ ଶ୍ରୀ ଦିଲୀପ କୁମାର ବେଉରା । ଉଭୟଙ୍କୁ ସାଧୁବାଦ ।

ପ୍ରକାଶନ ଅବସରରେ ମା-ବାପା ସ୍ୱର୍ଣ୍ଣଲତା-ହରେକୃଷ୍ଣ ପରିଡ଼ା, ଗୁରୁ ଅଧ୍ୟାପକ ତରୁଣ କୁମାର ସାହୁ, ଅଗ୍ରଜ ପ୍ରତିମ ଶ୍ରୀ ଦିବାକର ମହାନ୍ତି (ଗ୍ରନ୍ଥାଗାର ଅଧକ୍ଷ, କେନ୍ଦ୍ରାପଡ଼ା କଲେଜ) ଓ ଗାଳ୍ପିକ ପ୍ରଶାନ୍ତ ମହାନ୍ତି ଏବଂ ବଂଧୁ ପ୍ରମୋଦ ପ୍ରତାପଙ୍କ ସହିତ ଶାନ୍ତିନିକେତନଠାରେ ୧୯୮୫ ମସିହାରେ ମୋର ସତୀର୍ଥ ଆନନ୍ଦ ଚନ୍ଦ୍ର ସାହୁ, ନାରାୟଣ ପ୍ରସାଦ, ଅଶୋକ ରଥ, ମନୋରଞ୍ଜନ ପ୍ରଧାନ, ମିହିର କୁମାର ସାହୁ, ସତ୍ୟପ୍ରିୟ ମହାଲିକ, ଅର୍ଜୁନ ଚରଣ କର, ସୃଷ୍ଟିଧର ପଣ୍ଡା, ସତ୍ୟ ଷଡ଼ଙ୍ଗୀ, ସୁବାସ ସାହୁ ଓ ଧରଣୀଧର ବେହେରାଙ୍କୁ ସକୃତଜ୍ଞ ଓ ସାନନ୍ଦ ସ୍ମରଣ କରୁଛି । ଦ୍ୱିତୀୟ ପ୍ରକାଶନର ପ୍ରେରଣା ଶ୍ରଦ୍ଧାସ୍ପଦା ମାନୁ, ତୁନି ଓ ଗାଳ୍ପିକ-ଗଳ୍ପଗବେଷକ, ଗଳ୍ପତତ୍ତ୍ୱ ସଂକଳକ ଶ୍ରଦ୍ଧେୟ ଗୌରହରି ଦାସଙ୍କୁ ଆନ୍ତରିକ ଅଭିନନ୍ଦନ ।

ଏହି ଗ୍ରନ୍ଥଟି ପାଇଁ ମୁଁ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଆଶୀର୍ବାଦ ପ୍ରାର୍ଥନା କରି ପବିତ୍ର ରଥଯାତ୍ରା (ଶ୍ରୀଗୁଣ୍ଡିଚା ଯାତ୍ରା) ଦିନରେ ମୋତେ ପ୍ରଥମ ପିତୃତ୍ୱ ପ୍ରଦାନ କରିଥିବା ମୋର ଜ୍ୟେଷ୍ଠା କନ୍ୟା ଶ୍ରଦ୍ଧେୟା 'ମାମୁନି' (ସ୍ନିଗ୍ଧା ସୁଚରିତା) କୁ ଉତ୍ସର୍ଗ କରୁଛି ।

ମାମା ୧୭ ତମ ଜନ୍ମବାର୍ଷିକୀ

ତା ୦୮. ୦୭. ୨୦୦୫

## ସୂଚୀ .....

# ପରିଚୟ

'କ୍ଷୁଦ୍ରଗଳ୍ପ' ସାହିତ୍ୟର ଗଦ୍ୟଶ୍ରେଣୀ ଅନ୍ତର୍ଗତ । ଏହା କାଳ୍ପନିକ ଏବଂ ଏହାର ଧର୍ମ 'କଥନ' ବା 'କଥକତା' । ଏଣୁ ଏହା କଥାସାହିତ୍ୟ । କଥାସାହିତ୍ୟ ପର୍ଯ୍ୟାୟରେ ଉପନ୍ୟାସ ଓ ଗଳ୍ପ ଉଭୟ ଅଙ୍ଗୀଭୂତ ହୁଅନ୍ତି ।

'କ୍ଷୁଦ୍ରଗଳ୍ପ'ର ପରିସର ସଂକ୍ଷିପ୍ତ । ପାତ୍ରପାତ୍ରୀ ସ୍ୱଳ୍ପ । ପ୍ରସଙ୍ଗ ଏକକ ବା ଏକମୁଖୀ ଏକାଧିକ । କାଳ ସଂକ୍ଷିପ୍ତ । ଆବେଦନ ଗଭୀର । ପ୍ରଭାବ ଗମ୍ଭୀର ।

ଆଙ୍ଗିକ ଦୃଷ୍ଟିରୁ ଆକାର ସଂକ୍ଷିପ୍ତ । ଆଙ୍ଗିକର ଅନ୍ୟ ସମସ୍ତ ଦିଗରୁ ଏହା ଏକାନ୍ତ ନମନୀୟ । ଏହାପୁଣି ସଂକ୍ଷିପ୍ତତମ ଓ ଦୀର୍ଘତମ ହୋଇପାରେ । ଆତ୍ମିକ କ୍ଷେତ୍ରରେ ଏହା ସାହିତ୍ୟର ସମସ୍ତ ପ୍ରକାର ଆତ୍ମିକପକ୍ଷକୁ ଗ୍ରହଣ କରିପାରେ । ଏଥିରେ ସମସ୍ତ ରସ, ସମସ୍ତ ଭାବ, ସମସ୍ତ ତତ୍ତ୍ୱ, ସମସ୍ତ ଦର୍ଶନ ପ୍ରଯୁକ୍ତ ହୋଇପାରେ ଯେମିତି; ସାହିତ୍ୟର ସମସ୍ତ ରୀତି ଏଥିରେ ବ୍ୟବହୃତ ହୋଇପାରେ ସେମିତି । ସବୁପ୍ରକାର ଚରିତ୍ର, ସବୁପ୍ରକାର ଘଟଣା, ସବୁପ୍ରକାର ଦୃଶ୍ୟ, ସବୁ ସ୍ଥାନ ଏବଂ ସବୁ ମନୋଭାବ ଏଥିରେ ଗ୍ରହଣୀୟ ଓ ବର୍ଣ୍ଣନୀୟ ।

'କ୍ଷୁଦ୍ରଗଳ୍ପ'ରେ କ୍ଷୁଦ୍ର ଶବ୍ଦରେ 'ଆକାର' ଏବଂ ଗଳ୍ପ ଶବ୍ଦରେ 'ରମ୍ୟକଥା' ସୂଚୀତ ହେଉଥିଲେ ହେଁ ଯେକୌଣସି 'ସଂକ୍ଷିପ୍ତ ରଚନା' କିମ୍ବା ଯେକୌଣସି 'ଶ୍ରୁତିରୋଚକ କଥା'-କ୍ଷୁଦ୍ରଗଳ୍ପ ନୁହେଁ ।

ଏହା ସ୍କେଚ୍, ଆଭାସ, ସ୍ତମ୍ଭଲେଖ, ଫିଚ୍‌ର, ସ୍ମୃତିଲିପି, ଶୋକଲିପି, ସଂସ୍ମରଣ ଇତ୍ୟାଦି ଆପାତ କ୍ଷୁଦ୍ରରଚନା ନୁହେଁ କିମ୍ବା ଲଘୁକଥା, ରମ୍ୟରଚନା, କଥିକା, ଜୀବନୀ, ଭ୍ରମଣ କଥା, ଲୋକକଥା, ବୀରକଥା, ପ୍ରେମକଥା, ଭୂତପ୍ରେତ କଥା, ଆବିଷ୍କାର କଥା ଭଳି ଆନନ୍ଦ-ରୋମାଞ୍ଚଦାୟୀ ଆଖ୍ୟାନ ମଧ୍ୟ ନୁହେଁ । ମାତ୍ର ଏସବୁ କ୍ଷୁଦ୍ରଗଳ୍ପରେ ଗର୍ଭସ୍ଥ ହୋଇପାରେ ।

ବସ୍ତୁତଃ କ୍ଷୁଦ୍ରଗଳ୍ପ ହେଉଛି ଊନବିଂଶ ଶତାବ୍ଦୀରେ ଉଦ୍ଭୁତ ଏକ ନୂତନ ଓ ସ୍ୱତନ୍ତ୍ର ସାହିତ୍ୟିକ ବିଭାବ । ସଭ୍ୟତାର ବିକାଶରେ ଯନ୍ତ୍ରଶିଳ୍ପର ପ୍ରାଧାନ୍ୟ ଓ ଜୀବନର ଐକିକତା ସହିତ କ୍ଷୁଦ୍ରଗଳ୍ପ ଜନ୍ମର ସମ୍ପର୍କ ନିବିଡ଼ । ସାମୟିକ ପତ୍ରପତ୍ରିକା ପ୍ରକାଶନ ସହିତ

କ୍ଷୁଦ୍ରଗଳ୍ପର ସୃଷ୍ଟି ଓ ପ୍ରସାର ଅବିଚ୍ଛିନ୍ନ । ପତ୍ରିକାପାଠକଙ୍କ ପଠନତୃଷା ମେଣ୍ଟାଇବା, ପତ୍ରିକାପ୍ରତି ସେମାନଙ୍କ ଆକର୍ଷଣ ଜାରି ରଖିବା, ସର୍ବୋପରି ପତ୍ରିକାର ସୀମିତ ଆୟତନ ମଧ୍ୟରେ ବହୁ ଲେଖକଙ୍କୁ ପଙ୍‌କ୍ତିଭୂକ୍ତ କରିବା ଉଦ୍ଦେଶ୍ୟରୁ ପତ୍ରିକାରେ ସଂକ୍ଷିପ୍ତ ମନୋରଞ୍ଜନଧର୍ମୀ ଅଥଚ୍ ବୌଦ୍ଧିକ ଖୋରାକ ଯୋଗାଉଥିବା ରଚ୍‌ନା ଆବଶ୍ୟକ ହେଲା । ସେହି ଆବଶ୍ୟକତା ପରିପୂରଣ ପାଇଁ ସୃଷ୍ଟି ହେଲା ଯେଉଁ ନୂତନ ସାହିତ୍ୟରୂପ ତାହା କ୍ଷୁଦ୍ରଗଳ୍ପ ।

ଏହି ନୂତନ ଗଳ୍ପ-ରୀତି ଅର୍ଥାତ୍ 'କ୍ଷୁଦ୍ରଗଳ୍ପ' ହେଉଛି ଘଟଣାପ୍ରତି ଚରିତ୍ରର ଚିନ୍ତନ ଓ ପ୍ରତିକ୍ରିୟାର ସମବାୟରେ ଗଠିତ ଏକ କଳାସ୍ନିଗ୍ଧ ସଂକ୍ଷିପ୍ତ ଓ ଘନପୀନଦ୍ଧ କଥାବସ୍ତୁ । କଥାବସ୍ତୁଟି ହେଉଛି ଆଧେୟ । ଏଥିରେ ଆଧାର ଭାବେ ରହେ ଚରିତ୍ର, ପରିସ୍ଥିତି, ପରିବେଶ-ବାତାବରଣ ଓ ଭାଷା । ଏହାର ଆବେଦନ ହୋଇପାରେ ସୁଖାନ୍ତ, ଦୁଃଖାନ୍ତ, ହାସ୍ୟରସାତ୍ମକ, ସ୍ୱୈରାତ୍ମକ, ବ୍ୟଙ୍ଗାତ୍ମକ । ଏକ ଗମ୍ଭୀର-କରୁଣ-ବିଷର୍ଣ୍ଣ ଔଦାସ୍ୟ ଯେମିତି, ସେମିତି ଲଘୁ-ପ୍ରାଣୋଚ୍ଛଳ-ପୁଲକାୟିତ ବିନୋଦ ଏଥିରୁ ସୁଲଭ ହୋଇପାରେ ।

କ୍ଷୁଦ୍ରଗଳ୍ପର ଯାହା ସ୍ମରଣ ରହେ ତାହା ହେଉଛି ଏକ ଘନୀଭୂତ କଥାବସ୍ତୁ ଏବଂ କ୍ଷୁଦ୍ରଗଳ୍ପ ପ୍ରେରିତ ଆବେଦନ । କେଉଁଠି କେଉଁଠି ଏକ ଉଜ୍ଜ୍ୱଳ ବା ବ୍ୟତିକ୍ରମ ଚରିତ୍ର ମଧ୍ୟ ସ୍ମରଣୀୟ ହେଇ ରହିଯାଏ । ତଥାପି କ୍ଷୁଦ୍ରଗଳ୍ପର ବିଶେଷତ୍ୱ ତା'ର ପରିଣତି ସ୍ଫୁରିତ ଆବେଦନରେ ନିହିତ ।

ଏଣୁ କ୍ଷୁଦ୍ରଗଳ୍ପର ପରିଣତି ହିଁ ପ୍ରଥମେ ସ୍ଥିରୀକୃତ ହୋଇଥାଏ । ସେହି ପରିଣତିରେ ପହଞ୍ଚିବାପାଇଁ ଚରିତ୍ରର ଘଟଣା ସହିତ ସଘାଂତ ଘଟାଯାଏ । ବେଳେବେଳେ କଳ୍ପିତ ପରିଣତିଠାରୁ ଗଳ୍ପପରିଣତି ଭିନ୍ନ ହୋଇଯାଏ ମଧ୍ୟ ।

ତେବେ ଯଥୋପଯୁକ୍ତ ଏବଂ ଯଥାସଂକ୍ଷିପ୍ତ ଘଟଣାବିନ୍ୟାସ-ଯଥାସମ୍ଭବ ସ୍ୱଳ୍ପ ଏପରିକି ଏକକ ଚରିତ୍ର ସମାବେଶ-ଯଥୋଚିତ ପ୍ରାକ୍‌କଥନ ବା ପ୍ରସ୍ତାବନା-ଯଥାସତର୍କ ମୁଖ୍ୟ ଘଟଣା ସ୍ଥାପନ ଓ ଯଥାଦ୍ରୁତ ପରିଣତି ସାଧନ ମଧ୍ୟରେ ଯଥାକଳ୍ପିତ ରସାବେଶ ସୃଷ୍ଟିକରି ଯଥା ନିର୍ଦ୍ଧାରିତ ସନ୍ଦେଶ ସଂପ୍ରେରଣ କିମ୍ବା ଅନୁଭବ ପ୍ରତିବେଦନ ଏକ ସାର୍ଥକ କ୍ଷୁଦ୍ରଗଳ୍ପର ପରିଚ୍ଚୟ ।

# ପ୍ରାକ୍‌ରୂପ

କ୍ଷୁଦ୍ରଗଳ୍ପର କଳାଧର୍ମ ଓ ଜନପ୍ରିୟତା ପ୍ରତି ଦୃଷ୍ଟିଦେଲେ ଏହି ଅର୍ବାଚୀନ ସାହିତ୍ୟବିଧାଟି ଯେତିକି ବିସ୍ମୟ ପ୍ରଦାନ କରେ; ଏହାର ଏକ ସୁଦୀର୍ଘ ପରମ୍ପରା ଥିବା ସେତିକି ଅନୁମାନ କରାଇଥାଏ । ବସ୍ତୁତଃ କ୍ଷୁଦ୍ରଗଳ୍ପ ଊନବିଂଶ ଶତାବ୍ଦୀର ସୃଷ୍ଟି ମାତ୍ର ଗଳ୍ପଚେତନା ଅତିପ୍ରାଚୀନ; ଏପରିକି ମାନବର ଗୋଷ୍ଠୀଜୀବନର ଆଦ୍ୟଲଗ୍ନରେ ତାହାର ମୂଳ ଅନ୍ୱେଷିତ ହୋଇପାରେ ।

ଖୁବ୍ ଅତୀତକୁ ଗଲେ ଲୋକସାହିତ୍ୟରେ ସୁଲଭ ଲୋକକଥା ବା ଲୋକଗଳ୍ପ, ଅତିକଥା ବା ମିଥ୍, ପୁରାଣକଥା, ମହାକାବ୍ୟକଥା ଓ ଇତିହାସକଥା ଏବଂ ଗାଥାଗର୍ଭିତ କଥା କ୍ରମରେ 'ଗପ'ର ଏକ ସୁଦୀର୍ଘ ପରମ୍ପରା ଦୃଶ୍ୟମାନ ହୁଏ ।

ପ୍ରକୃତି ପ୍ରତି ମୁଗ୍ଧ-ବିସ୍ମୟ-କୌତୂହଳ-ଭୟ ଓ ଭକ୍ତି ଭାବରୁ ସାହିତ୍ୟର ଓଁକାର । ତାହାର ଆଦିପ୍ରକାଶ ହିଁ କଥା । ଆପଣା ଅନୁଭବକୁ ବାଣ୍ଟିବାପାଇଁ ଆଦିମ ମଣିଷର ଭାଷାହୀନ, ବାକ୍‌ହୀନ, ସଙ୍କେତ ଓ ଧ୍ୱନି-ସର୍ବସ୍ୱ ପ୍ରଚେଷ୍ଟା ବସ୍ତୁତଃ ଏକ 'କଥା' ସଂପ୍ରେଷଣ ପାଇଁ ଉଦ୍ଦିଷ୍ଟ ଥିଲା । ତାହା ଏକସମୟରେ ଭାଷା ଓ ସାହିତ୍ୟର ଜନକ ହେଲା । ବାଙ୍‌ମୟର ପ୍ରଥମ ରୂପ ଏଣୁ ଗଦ୍ୟ । ପ୍ରଥମ ରୂପ ହେଉଛି କଥା ।

ଲୋକକଥା ଗୁଡ଼ିକ ବସ୍ତୁତଃ ବୃକ୍ଷଲତା, ପ୍ରାଣୀସକଳ ଓ ଅଚଳ ପ୍ରକୃତିକୁ ବାକ୍‌ଶୀଳ କରାଇ ସେମାନଙ୍କ ଜରିଆରେ ମାନବ ସମସ୍ୟାର ସୂକ୍ଷ୍ମରୁ ଜଟିଳ ପ୍ରସଙ୍ଗ ଉପସ୍ଥାପିତ କରାଏ ଓ ତାହାର ସମାଧାନ ଦିଗରେ ଇଙ୍ଗିତ ଦାନ କରେ । ସନ୍ନିହିତ ସାମାନ୍ୟ ନୀତିଶିକ୍ଷା ଲୋକଗଳ୍ପକୁ ଅମରତ୍ୱ ପ୍ରଦାନ କରିଛି ।

ସଂସ୍କୃତ ସାହିତ୍ୟରେ କାବ୍ୟ-ନାଟକ ଆଦି ପ୍ରାଚୀନ ସାହିତ୍ୟର ବର୍ତ୍ତମାନତା ସହିତ ଗଦ୍ୟକଥା ପରଂପରାର ଏକ ସମୃଦ୍ଧ ଅତୀତ ଥିଲା । 'ପଦ୍ୟକଥା' ଦୃଷ୍ଟିରୁ ତାହା ଆହୁରି ପ୍ରାଚୀନ ଅପୌରୁଷେୟ 'ବେଦ'ରେ ସୁଦ୍ଧା ସନ୍ଧାନେୟ । କିନ୍ତୁ ଏସବୁ ଥିଲା ଆଖ୍ୟାୟିକା ଧର୍ମୀ । ଉପନିଷଦ ଗୁଡ଼ିକ ସେହିଭଳି ଆଖ୍ୟାୟିକା ଗୁଡ଼ିକର ତାତ୍ତ୍ୱିକ ରୂପ ।

ପ୍ରକୃତ କାହାଣୀ ବା ଗଳ୍ପ (କଥାପରିଣତି ବିଶିଷ୍ଟ) ରଚନା ସୁଲଭ ହୁଏ 'ପଞ୍ଚତନ୍ତ୍ର' କଥାମାଳାରେ । 'ପଞ୍ଚତନ୍ତ୍ର' କଥାମାଳାରେ ୭୬ଟି କାହାଣୀ ଅଛି ।

ଏଗୁଡ଼ିକରୁ ଅଧିକାଂଶ ପରସ୍ପର ସଂପର୍କିତ ଓ ଏଗୁଡ଼ିକ ମଧ୍ୟରେ କଥା କିମ୍ବା ଚରିତ୍ର ଅଥବା ସ୍ଥାନଗତ ସୂକ୍ଷ୍ମସଂପର୍କ ଅବାରିତ । ସମସ୍ତ ଗଳ୍ପ ୫ଟି ଭାଗରେ ବିନ୍ୟସ୍ତ ଏଣୁ କଥାମାଳାର ନାମ· 'ପଞ୍ଚତନ୍ତ୍ର' । ଏସବୁ କାହାଣୀ ସଂସାରଜଞ୍ଜାଳରେ ଆପଣାର ଭୂମିକାକୁ ନିର୍ବିବାଦୀୟ କରିବାକୁ ବଂଧୁତା, ଉଦାରତା, ଦୟାଶୀଳତା, କର୍ତ୍ତବ୍ୟନିଷ୍ଠା, ସ୍ନେହ-ପ୍ରେମ ଆଦି ଯେଉଁ ସମ୍ଭାବ୍ୟ ବିପଦ ଯଥା—ମିତ୍ରଭେଦ, କପଟାଚାର, ଖଳବୁଦ୍ଧି, ଦୁର୍ବ୍ୟସନ, କୁମନ୍ତ୍ରଣା ଭେଟନ୍ତି ସେଗୁଡ଼ିକର ମୁକାବିଲା କରି ମିତ୍ରପ୍ରାପ୍ତି ତଥା ସଂସାର ଜ୍ଞାନକୁଶଳତା ଅର୍ଜନ ପାଇଁ ଉଦ୍ଦିଷ୍ଟ ଥିଲା ।

ଏହାର ସାମାନ୍ୟ ପୂର୍ବାପର ହୋଇ 'ବୃହତ କଥା', 'କଥା ମଞ୍ଜରୀ', 'କଥା ସରିତ ସାଗର', 'ବେତାଳ ପଞ୍ଚବିଂଶତି', 'ହିତୋପଦେଶ', 'ସିଂହାସନ ଦ୍ୱାତ୍ରିଂଶିକା', 'ଶୁକ ସପ୍ତଶତୀ', 'ଜାତକ କଥା' ଭଳି ଗଦ୍ୟକଥା ଏବଂ 'କାଦମ୍ବରୀ' ଓ 'ଦଶକୁମାର ଚରିତ' ଭଳି ଗଦ୍ୟକାବ୍ୟରେ ସନ୍ନିବେଶିତ ଶହଶହ ଗଳ୍ପ ସମସାମୟିକ ସମାଜ ଜୀବନର ବିବିକ୍ତ ସ୍ୱରୂପ ପ୍ରକଟରେ ସୋଚ୍ଚାର । ମାନବୀୟ ଭାବାନୁଭବକୁ ବହୁମତେ ପ୍ରତିଫଳିତ କରାଇପାରିଥିଲା ସେଗୁଡ଼ିକ ।

ଓଡ଼ିଆ ଭାଷାରେ ସେହିଭଳି ଲୋକମୁଖରେ ପ୍ରଚଳିତ ଓ ପିଢ଼ିପିଢ଼ି ହୋଇ ପ୍ରବାହିତ ଲୋକକାହାଣୀ ଗୁଡ଼ିକ ପର୍ଯ୍ୟାପ୍ତ । କୁଞ୍ଜବିହାରୀ ଦାଶ, ଗୋପାଳ ଚନ୍ଦ୍ର ପ୍ରହରାଜ ପ୍ରମୁଖଙ୍କ ଦ୍ୱାରା ସଂଗୃହୀତ ଓ ସଂକଳିତ 'ଉତ୍କଳ କାହାଣୀ', 'ଲୋକଗଳ୍ପ ସଞ୍ଚୟନ', ପ୍ରଭୃତି ବ୍ୟତୀତ 'କଥାଲହରୀ', 'ଉତ୍କଳ କାହାଣୀ ଦର୍ପଣ' ଓ 'ଫୋଂକ୍‌ଟେଲ୍‌ସ ଅଫ୍ ଓରିଶା' ପ୍ରଭୃତି ଗ୍ରନ୍ଥ ଏହି ପୁଷ୍କଳ କଥାପରଂପରାର ପ୍ରମାଣ ବହନକରେ । ମହାଭାରତ, ରାମାୟଣ ଓ ପୁରାଣ ଗୁଡ଼ିକରେ ଖଚିତ କେତେକ ଆଖ୍ୟାନ ଉପାଖ୍ୟାନରେ ଓଡ଼ିଆ କଥାକାରିତାର ନମୁନା ସୁଲଭ ହେଲେ ହେଁ ଲିଖିତ ଗଦ୍ୟକଥା ଭାବେ 'ଚତୁର ବିନୋଦ', 'ରୁଦ୍ର ସୁଧାନିଧି', 'ପ୍ରସ୍ତାବ ଚିନ୍ତାମଣି', 'ହାସ୍ୟକଲ୍ଲୋଳ' ଏବଂ ସାମାନ୍ୟ ପରିବର୍ତ୍ତିତ 'ବତ୍ରିଶ ସିଂହାସନ', 'ବେତାଳ ପଞ୍ଚବିଂଶତି' ଗ୍ରନ୍ଥ ଗୁଡ଼ିକର ନାମ ଉଲ୍ଲେଖ୍ୟ ।

ପାଶ୍ଚାତ୍ୟ ସାହିତ୍ୟରେ ଗଳ୍ପର ମଧ୍ୟ ଦୀର୍ଘ ପରଂପରା ଅଛି ଓ ପାଶ୍ଚାତ୍ୟ ପରଂପରାଟି ପ୍ରାଚ୍ୟ ନିକଟରେ ଋଣୀବୋଲି ପଣ୍ଡିତମାନେ ମତଦିଅନ୍ତି । ତେବେ ପରିବର୍ତ୍ତିତ ସମାଜ ପରିସ୍ଥିତିରେ ସେଗୁଡ଼ିକ ସ୍ୱତନ୍ତ୍ର ।

'ଇଲିଆଡ୍' ଓ 'ଅଡ଼ିଶୀ' ଅପେକ୍ଷା ପ୍ରାଚୀନ ମିଶର ଦେଶର 'ଖଫ୍ରିଙ୍କ କାହାଣୀ'ଠାରୁ ଇସପ୍‌ଙ୍କ ଫେବଲ୍‌ସ୍ ସମେତ ପାଶ୍ଚାତ୍ୟ କଥା ପରଂପରା ସମୃଦ୍ଧ । 'ଇଲିଆଡ୍' ଓ 'ଅଡ଼ିଶୀ' ମହାକାବ୍ୟ ଦ୍ୱୟରେ କେତେକ ଆଖ୍ୟାୟିକା ଗୁଂଫିତ ମାତ୍ର ସେଗୁଡ଼ିକ ରାମାୟଣ ଓ ମହାଭାରତ କାହାଣୀ ଭଳି; ସ୍ୱତନ୍ତ୍ର ଗଳ୍ପ ନୁହନ୍ତି । ଏଣୁ

ବୋକାସିଓଙ୍କ 'ଡ଼େକାମେରନ' ଗ୍ରନ୍ଥରେ ପାଶ୍ଚାତ୍ୟ କାହାଣୀଧାରାର ଯଥାର୍ଥ ମୂଳ ନିହିତ । ଚସରଙ୍କ 'କ୍ୟାଣ୍ଟରବରୀ ଟେଲ୍ସ'ରେ ଏହିଧାରା ଆହୁରି ପ୍ରଖର ।

'ଆରବ୍ୟ କାହାଣୀ' (୧୪୫୦ ଖ୍ରୀ:ଅ) ଓ 'ପାରସ୍ୟକାହାଣୀ' ନାମକ ଦୁଇଟି କାହାଣୀମାଳା ସଂପୃକ୍ତ ଭୂଖଣ୍ଡର ଜନଚେତନାକୁ ଧାରଣ କରି ବିଚିତ୍ର ଓ ବିସ୍ମୟକର ।

ଏପ୍ରକାର କାହାଣୀଧାରା ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ବଳବତ୍ତର ଥିଲା । ପୃଥିବୀର ପ୍ରତିପ୍ରାନ୍ତରେ ଜନଜୀବନର ନିଜସ୍ୱ ଛନ୍ଦରୁ ସେହିପ୍ରାନ୍ତର ଗଳ୍ପ ଆପଣା ପ୍ରାଣ ଓ ବର୍ଣ୍ଣବିଭା ହାସଲ କରିଥିଲା ।

ଊନବିଂଶ ଶତାବ୍ଦୀର ୧ମ ଦଶକରେ ଆମେରିକା, ଫ୍ରାନ୍ସ ଓ ରୁଷିଆରେ କଥାର ନବଜନ୍ମ ହେଲା । ଏହାର ପ୍ରସୂତୀ ଥିଲା ସ୍କେଚ୍ । ସ୍କେଚ୍ ଗୁଡ଼ିକ ହେଉଛି ଭ୍ରମଣ, ଅଭିଯାନ, (କାଳ୍ପନିକ ମଧ୍ୟ ହୋଇପାରେ) ଭିତ୍ତିକ ଅନୁଭୂତିର ରୂପାୟନ । ସେଗୁଡ଼ିକ ଅଗଭୀର କିନ୍ତୁ ବର୍ଣ୍ଣିଳ ।

ପରେପରେ ଏଡ୍‌ଗାର ଆଲାନ୍ ପୋ, ନାଥାନିଏଲ୍ ହଥର୍ଣ୍ଣ ପ୍ରମୁଖ କାହାଣୀ (ଟେଲ୍) ରଚନା କରି କଥା ପରମ୍ପରାର ନୂତନ ବିଧାନ ଆରମ୍ଭ କରିଥିଲେ ।

କଥାର ଆଙ୍ଗିକରେ ସୁଦ୍ଧା ଏମାନେ ଆଣିଥିଲେ ପରିବର୍ତ୍ତନ । ଯହିଁରେ ସଂକ୍ଷିପ୍ତି ମୁଖ୍ୟ ଏବଂ ଘଟଣା-କାଳର ଐକ୍ୟ ଗୁରୁତ୍ୱପୂର୍ଣ୍ଣ ଥିଲା । ସାମାନ୍ୟ ଶିଥିଳ ହେଲେହେଁ ସ୍ୱଳ୍ପ ଚରିତ୍ର, ସାମାନ୍ୟଘଟଣା ଓ ସ୍ୱାଭାବିକ ପରିଣତି ବିଶିଷ୍ଟ ଏହି ଗଳ୍ପଗୁଡ଼ିକ ଯଥାର୍ଥ କ୍ଷୁଦ୍ରଗଳ୍ପର ସମୀପ । ଏହି କଥାକାର ମାନଙ୍କ ମଧ୍ୟରେ ଆମେରିକାର ମାର୍କଟ୍ୱାଇନ୍, ହରମାନ୍ ମେଲଭିଲ, ଇଂରାଜୀ ସାହିତ୍ୟର ୱାସିଂଟନ ଆଇରଭିଂ, ହେନ୍‌ରିଭେନ୍ କ୍ଲୋଇଷ୍ଟ, ଇ.ଟି.ଏ ହଫ୍‌ମାନ୍ ; ଫରାସୀ ସାହିତ୍ୟରେ ବାଲଜାକ୍, ଗୋତିୟେର୍ ମୋପାଁସା, ଫ୍ଲୁବେୟାର, ଚାର୍ଲସ ନୋଦିଆର ଏବଂ ଋଷୀୟ ସାହିତ୍ୟରେ ଗୋଗୋଲ୍, ତୁର୍ଗନେଭ୍, ଲର୍‌ମୋନ୍ତେଭ୍ ଓ ଶେଖଫ୍ ପ୍ରମୁଖ ଗଳ୍ପକାରଙ୍କ ରଚନାର ବିଧାନ ଓ ରୂପ ଭିତ୍ତିରେ କ୍ରମେ ସ୍ପଷ୍ଟ ହୋଇଉଠିଲା କ୍ଷୁଦ୍ରଗଳ୍ପ । ୧୮୪୨ ମସିହାଠାରୁ କ୍ଷୁଦ୍ରଗଳ୍ପ ରଚନା ଆରମ୍ଭ ହୋଇଥିଲେ ହେଁ ୧୮୮୪ ମସିହାରେ ତାର ନାମ 'କ୍ଷୁଦ୍ରଗଳ୍ପ' ହୁଏ ; କ୍ଷୁଦ୍ରଗଳ୍ପର ବ୍ୟାକରଣକାର ବ୍ରାଣ୍ଡର୍ ମାଥ୍ୟୁସ୍‌ଙ୍କ ଦ୍ୱାରା ; କ୍ଷୁଦ୍ରଗଳ୍ପର ଦର୍ଶନ (ଫିଲସଫି ଅଫ୍ ଦି ସର୍ଟଷ୍ଟୋରି) ରଚନାରେ ।

# ପ୍ରକାଶ ଓ ବିକାଶ

ନାଥାନିଏଲ ହଥର୍ଣ୍ଣ ବିରଚିତ କେତେକ 'ସଂକ୍ଷିପ୍ତ ବର୍ଣ୍ଣନାଶ୍ରୟୀ ଗଦ୍ୟ' ସମ୍ବଳିତ ଏକ ଗ୍ରନ୍ଥ - 'ଟ୍ୱାଇସ୍‌ଟୋଲ୍ଡ ଟେଲ୍‌ସ୍'ର ସମୀକ୍ଷା କରିବାକୁ ଯାଇ ଏଡ଼ଗାର୍ ଆଲାନ୍ ପୋ ସେଗୁଡ଼ିକୁ ପ୍ରଥମେ ଏକ ସ୍ୱତନ୍ତ୍ର କଳାକର୍ମ ଭାବେ ଚିହ୍ନଟ ଦେଇଥିଲେ ଓ ସେଥିପାଇଁ ଏକ ସଂଜ୍ଞା ନିର୍ଦ୍ଧାରଣ କରିଥିଲେ—'ଅଧଘଣ୍ଟାଏରୁ ଘଣ୍ଟାଏ ଦୁଇଘଣ୍ଟା ମଧ୍ୟରେ ପଢ଼ି ଶେଷ କରିହେଉଥିବା ରଚନା'।

ଅର୍ଥାତ୍ ସେ ସମୟକୁ (୧୮୪୨ ମସିହା) ଦୁଇଘଣ୍ଟାରୁ ଊର୍ଦ୍ଧ୍ୱ ସମୟବିକ୍ଷେପୀ ଦୀର୍ଘକାୟ ଗଦ୍ୟକଥା ପ୍ରଚଳିତ ଥିଲା। ମୁଖ୍ୟତଃ ରହସ୍ୟ-ରୋମାଞ୍ଚ, ବୀରତ୍ୱ-ଯୋଦ୍ଧୃତ୍ୱ ଓ ପ୍ରେମ-ପ୍ରଣୟର ପ୍ରସଙ୍ଗରେ ସେଗୁଡ଼ିକ ଥିଲା ଶବଳିତ। ସେଗୁଡ଼ିକୁ 'ଦୀର୍ଘକାହାଣୀ' କୁହାଯାଉଥିଲା। ସେଗୁଡ଼ିକ କିନ୍ତୁ ଉପନ୍ୟାସ ନଥିଲା। ସମସାମୟିକ ପରିଭାଷାରେ ତାହା ଥିଲା 'ଟଲ୍ ଟେଲ୍'।

ଉପନ୍ୟାସ ହୋଇପାରିନଥିବା କିମ୍ବା କରାଯାଇନଥିବା ଏଭଳି ରଚନାକୁ ଉପନ୍ୟାସିକା (ନଭେଲେଟ୍) ବା କ୍ଷୁଦ୍ର କଳ୍ପିତକଥା (ସର୍ଟ ଫିକ୍ସନ୍) ବା କ୍ଷୁଦ୍ର ଉପନ୍ୟାସ (ସର୍ଟ ନଭେଲ୍) ମଧ୍ୟ କୁହାଯାଉଥିଲା।

ହଥର୍ଣ୍ଣଙ୍କ 'ଟ୍ୱାଇସ୍‌ଟୋଲ୍ଡ ଟେଲ୍‌ସ' ଅନ୍ତର୍ଗତ ରଚନା ଥିଲା ତହିଁରୁ କ୍ଷୁଦ୍ର, ତହିଁରୁ ସୁବ୍ୟବସ୍ଥିତ ଓ ତହିଁରୁ ପ୍ରଭାବଶାଳୀ। ଏଣୁ ପୋ' ତାହାକୁ ପ୍ରଚଳିତ ଧାରାରୁ ସ୍ୱତନ୍ତ୍ର ଏକ ରଚନା ରୂପେ ଅଭିହିତ କରିଥିଲେ। ପରବର୍ତ୍ତୀ ସମୟରେ ବ୍ରାଣ୍ଡର ମାଥ୍ୟୁସ୍ ତାହାକୁ କ୍ଷୁଦ୍ରଗଳ୍ପ ନାମଦେଲେ। ୧୮୮୪ରେ ପ୍ରକାଶିତ 'ଫିଲସଫି ଅଫ୍ ଦି ସର୍ଟଷ୍ଟୋରି' ପ୍ରବନ୍ଧରେ ସେ ପ୍ରଥମକରି 'କ୍ଷୁଦ୍ରଗଳ୍ପ' ଅଭିଧା ପ୍ରୟୋଗ କଲେ।

ପୋ'ଙ୍କ ଦ୍ୱାରା ୧୮୪୨ ଓ ପୁଣି ୧୮୪୭ ମସିହାରେ ପ୍ରଦତ୍ତ ସେହି ଗ୍ରନ୍ଥବିଚାର ଭିତ୍ତିକ ମନ୍ତବ୍ୟ କ୍ଷୁଦ୍ରଗଳ୍ପର ଯେଉଁ ସ୍ୱରୂପ ପ୍ରତୀତ କରାଏ, ଆଜିର କ୍ଷୁଦ୍ରଗଳ୍ପ ତାହାକୁ ଅତିକ୍ରମ କରି କେତେକେତେ ଆତ୍ମିକ ଓ ଆଙ୍ଗିକ ବିଭବ ମଣ୍ଡିତ ହୋଇସାରିଛି।

ଉନବିଂଶ ଶତକର ଶେଷପାଦ ସୁଦ୍ଧା ପୋ' ପ୍ରବର୍ତ୍ତିତ ସଂଜ୍ଞା ଅଧୀନରେ ଇଂରାଜୀ, ଫରାସୀ, ଜର୍ମାନୀ ଓ ରଷୀୟ ଗଳ୍ପ ମଧ୍ୟ ଅନାୟାସରେ ଅନ୍ତର୍ଗତ ହେଉଥିଲା।

ପୋ'ଙ୍କ ନିଜସ୍ୱ ରୀତି ସୁଦ୍ଧା (ପୋ' ନିଜେ ଜଣେ ଗାଳ୍ପିକ) ଜର୍ମାନୀ 'ଗଥିକ୍ ଷ୍ଟୋରୀ' ବା ରହସ୍ୟ-ରୋମାଞ୍ଚ-ପ୍ରଣୟ ପ୍ରଧାନ, ରହସ୍ୟ-ରୋମାଞ୍ଚ-ଭୟାନକ ଏବଂ ରହସ୍ୟ-ସଂଧାନୀ ଗୁଇନ୍ଦା ଗଳ୍ପ (ଡିଟେକ୍ଟିଭ୍ ଷ୍ଟୋରୀ) ଧାରାର ଅନୁସାରୀ ଥିଲା ।

ସମସାମୟିକ ଫରାସୀ 'କୋନ୍ଥ' ଧାରାରୁ ଆଲୋଚ୍ୟଧାରାରେ ଲଘୁତା, ନମନୀୟତା, ନାଟକୀୟତା, ଯୌକ୍ତିକତା, ଭାବପ୍ରବଣତା ଏବଂ ଦୃଢ଼ ସଂକୋଚନ ରୀତି ଅନୁପ୍ରବେଶ କଲା ।

ଆମେରିକୀୟ ସାହିତ୍ୟରେ ପତ୍ରପତ୍ରିକାର ବ୍ୟାପକତା ଓ ସଂପୃକ୍ତ ବିଭାଗ ପ୍ରତି ପୃଷ୍ଠପୋଷକତା, ଆନ୍ତର୍ଜାତୀୟ ପାଣ୍ଡୁଲିପି ଅଧିକାର ଆଇନର ମୁକ୍ତତା, ଦୀର୍ଘକାହାଣୀର ସମୃଦ୍ଧ ପରମ୍ପରା ଏବଂ ଜୀବନର ଦ୍ରୁତତା ଓ ଯାନ୍ତ୍ରିକତା ପ୍ରଭୃତି କାରଣରୁ 'କ୍ଷୁଦ୍ରଗଳ୍ପ' ରଚନା ଓ ପ୍ରସାର ବ୍ୟାପକ ହୋଇଥିଲା । ସେଠାରେ ଭୌଗୋଳିକତା ଉପରେ ଗୁରୁତ୍ୱ ଦିଆଯିବାରୁ 'ସ୍ଥାନୀୟ ଗଳ୍ପ' ରଚନାର ସୂତ୍ରପାତ ହେଲା । ତାହାର ଅଭିବୃଦ୍ଧିରେ କ୍ଷୁଦ୍ରଗଳ୍ପରେ ଆଞ୍ଚଳିକତାବାଦର ପ୍ରାଧାନ୍ୟ ଅନୁଭୂତ ହେଲା । ଆଞ୍ଚଳିକଗଳ୍ପ ସଂପୃକ୍ତ ଅଞ୍ଚଳର ଭୌଗୋଳିକ, ସାଂସ୍କୃତିକ, ଚୈତନିକ ଓ ସାମାଜିକ ରୂପକୁ ପ୍ରତିଫଳିତ କଲା ।

ବିଂଶ ଶତକର ପ୍ରଥମ ପାଦରେ ଓ' ହେନ୍‌ରୀଙ୍କ ହାତରେ ଆମେରିକୀୟ ଗଳ୍ପ ଏକ ଚମତ୍କାର ଆଙ୍ଗିକ ସୌଷ୍ଠବ ଲାଭକରେ । ପରିଣତିରେ ନାଟକୀୟ ପଟପରିବର୍ତ୍ତନ ଏବଂ ଚଟୁଳ ବକ୍ରୋକ୍ତି ସମ୍ବଳିତ ଆକସ୍ମିକତା ଓ' ହେନ୍‌ରୀଙ୍କ ବୈଶିଷ୍ଟ୍ୟ । ଆମେରିକା ସାହିତ୍ୟକୁ ଏହା ଫରାସୀ ସାହିତ୍ୟରୁ ଉପଲବ୍ଧ ହୋଇଥିଲା ।

ଋଷୀୟ କଥାକାର ଆନ୍ତନ୍ ଶେଖଫ୍‌ଙ୍କ ଭୂମିକା ଆଧୁନିକ ଗଳ୍ପବିବର୍ତ୍ତନରେ ଏକ ପ୍ରମୁଖ ସ୍ଥାନ ଦାବୀକରେ । ତାଙ୍କ ଟିକିନିଖି ବସ୍ତୁ ଉପସ୍ଥାପନା ଓ ବିବରଣୀଦାନ, ପ୍ଲଟ୍‌ର ସାମାନ୍ୟ ଜଟିଳତା ଭିତରେ ଜୀବନର ଖଣ୍ଡିତାଂଶ ଉପସ୍ଥାପନ ରୀତି କ୍ରମେ ଏକ ଆଦର୍ଶଭାବେ ପରିଗୃହୀତ ହୋଇଥିଲା । ବହୁ ଖ୍ୟାତନାମା ଗାଳ୍ପିକ ତାହାର ଅନୁସାରୀ ହୋଇଥିଲେ ।

'ଜୀବନ ପାଇଁ କଳା'ର ଆହ୍ୱାନରେ 'କଳା ପାଇଁ କଳା'ର ପ୍ରତିବେଦନ ସ୍ତିମିତ ହୋଇଉଠିଲା । ବସ୍ତୁଗତ, ସାମାଜିକ ଓ ମନସ୍ତାତ୍ତ୍ୱିକ ପ୍ରସଙ୍ଗ ପ୍ରତି ଅଭିନିବେଶର ଚିତ୍ର ପ୍ରାଧାନ୍ୟ ପାଇଲା । ଜୀବନର ବିପୁଳତାକୁ ସୀମିତ କାଳଖଣ୍ଡରେ ପ୍ରମୂର୍ତ୍ତ କରାଇବାର ଉଦ୍ୟମ ଏହି ସମୟରେ କଥାକାରମାନଙ୍କ ଆଦର୍ଶ ଥିଲା ।

ସଂପ୍ରତି ଜେମ୍‌ସ୍ ଜୟେସ୍ (୧୮୮୨)ଙ୍କ ପ୍ରଭାବ ଅପ୍ରତିହତ । ତାଙ୍କ ଗଳ୍ପର 'ପରିଣତିରେ ଏପରି ଏକ ମୁହୂର୍ତ୍ତ ପର୍ଯ୍ୟନ୍ତ ଗଳ୍ପକୁ ଆଗେଇନେବା ଯାହା ଅକସ୍ମାତ୍ ସମୁଦାୟ ଗଳ୍ପକୁ ଆଲୋକ ଉଦ୍ଭାସିତ କରି ତାହାର ବୈଶିଷ୍ଟ୍ୟ ପ୍ରତିପାଦିତ କରିପାରେ'- ରୀତିଟି ବହୁ ଅନୁସୃତ ।

ଅତି ସଂପ୍ରତି କଳାତ୍ମକ ବା ସାହିତ୍ୟିକ କ୍ଷୁଦ୍ରଗଳ୍ପ ଏବଂ ଜନପ୍ରିୟ ଅଥବା କାଳ୍ପନିକ ଗୁଲିଗପ ମଧ୍ୟରେ ବ୍ୟବଧାନ ସଙ୍କୁଚିତ । କାଫ୍‌କାଙ୍କ ପ୍ରଭାବରେ ଗଳ୍ପରେ ପୁନର୍ବାର ଗୋଥିକ୍ ଉପାଦାନର ପ୍ରୟୋଗ ଘଟୁଛି । ଯାହା ପୋ'ଙ୍କ ଦୃଷ୍ଟିରେ ଥିଲା 'ଗ୍ରୋଟେସ୍କ' ତାହା ଏବେ ସ୍ଥୂଳଭାବରେ 'ଉଦ୍ଭଟ ଗଳ୍ପ' ନାମରେ ଏକ ନୂଆ ଆଙ୍ଗିକଭାବେ ସ୍ୱୀକୃତ ।

ବାସ୍ତବବାଦୀ ଗପସବୁ ଏବେ ତଥାପି ଆଦୃତ, ମାତ୍ର ତରୁଣ କଥାକାରଗଣ ଉଦ୍ଭଟ ଓ ଚମତ୍କାର କଥାପରିଣତି ପ୍ରତି ଆଗ୍ରହୀ । ସେମାନେ ଏବେ ବିଜ୍ଞାନ ପ୍ରସଙ୍ଗ କିମ୍ବା ଯୌନଚେତନା ଧର୍ମୀ ପ୍ରସଙ୍ଗ ପ୍ରତି ଧ୍ୟାନସ୍ଥ ହେଉଥିବା ଲକ୍ଷିତ ।

ସପ୍ତମ ଦଶକରେ ବାସ୍ତବତାର କଠୋର ଅନପେକ୍ଷ ଚମତ୍କାରିତା ନିକଟରେ କଳ୍ପନା ପରାସ୍ତ ହୋଇଛି ଏଣୁ କଳ୍ପନାଶ୍ରୟୀ କଥାସାହିତ୍ୟରେ ଆସିଛି ଆବେଦନ ସଞ୍ଚାର ଅକ୍ଷମତା । ଏବେ ବାସ୍ତବତା ଭିତରର ଚମତ୍କାରିତା ଦର୍ଶାଇବାରେ ଲେଖକମାନଙ୍କ ଉଦ୍ୟମ ଲକ୍ଷଣୀୟ ।

ଏକବିଂଶ ଶତାବ୍ଦୀରେ ଗଳ୍ପ ସାହିତ୍ୟରେ କି ପରିବର୍ତ୍ତନ ସଂସାଧିତ ହେଉଛି; ତାହାର ଅପେକ୍ଷା କରାଯାଉ ।

# ପ୍ରତିପାଦକ

ସାହିତ୍ୟ ନିତ୍ୟ ବିକାଶଶୀଳ । ଯେ କୌଣସି ବିକାଶଶୀଳ ପ୍ରସଙ୍ଗର ସଂଜ୍ଞା ନିର୍ଦ୍ଧାରଣ ଚେଷ୍ଟା ସବୁବେଳେ ଅସଂପୂର୍ଣ୍ଣ ଓ ଅଯଥେଷ୍ଟ ।

ସାହିତ୍ୟରେ 'କ୍ଷୁଦ୍ରଗଳ୍ପ' ପୁଣି ଅତ୍ୟନ୍ତ ଉଦାର ଓ ନମନୀୟ ବିଭବ । ଏଣୁ କ୍ଷୁଦ୍ରଗଳ୍ପର ସଂଜ୍ଞା ପ୍ରଦାନ ଅତ୍ୟନ୍ତ ଆୟାସ ସାପେକ୍ଷ । ଏଦିଗରେ ଏଯାବତ ବହୁ ବ୍ୟକ୍ତି ସଦୁଦ୍ୟମମାନ କରିଛନ୍ତି ।

ସେମାନଙ୍କ ମଧ୍ୟରେ ଅଛନ୍ତି କଥାକାର ଓ କଥା-ସମୀକ୍ଷକ । ପ୍ରତ୍ୟେକେ ସ୍ୱ-ସ୍ୱ ଦୃଷ୍ଟିକୋଣରୁ କ୍ଷୁଦ୍ରଗଳ୍ପକୁ ଏକ ସଂଜ୍ଞାଧୀନ କରିବାକୁ ଚେଷ୍ଟାକରିଛନ୍ତି । ତାହାର ଫଳଶ୍ରୁତି ସ୍ୱରୂପ ଉପଲଭ୍ୟ ହୋଇଛି ଅନେକ ସଂଜ୍ଞାତୁଲ୍ୟ ମନ୍ତବ୍ୟ ବା ନିର୍ଦ୍ଦେଶ ବା ଉପଦେଶ ।

ମନ୍ତବ୍ୟ ବା ନିର୍ଦ୍ଦେଶ ବା ଉପଦେଶ ସମୂହକୁ ଲକ୍ଷ୍ୟକଲେ ଦେଖାଯାଏ ଯେ, କ୍ଷୁଦ୍ରଗଳ୍ପର ସଂଜ୍ଞା ନିର୍ଦ୍ଧାରଣ ଚେଷ୍ଟାର ଫଳ; ଛ'ଜଣ ଅନ୍ଧଙ୍କର ହାତୀଦେଖା ଭଳି ହୋଇଛି । କେହି ଥୋଢ଼ପାହୁଡ଼, କେହି କାନ, କେହି ଗୋଡ଼, କେହି ପେଟ, କେହି ଲାଞ୍ଜକୁ ଧରି ସମଗ୍ର ହାତୀ ସଂପର୍କରେ ଖଣ୍ଡିତ ଅନୁଭୂତି ପ୍ରକାଶ କରିବାପରି; କ୍ଷୁଦ୍ରଗଳ୍ପର ପରିଭାଷା ପ୍ରଦାନ କରିବାକୁଯାଇ କେହି ତାହାର ଆକାର, କେହି ପ୍ରକାର, କେହି ଗୁଣ, କେହି ଉଦ୍ଦେଶ୍ୟ ଅଥବା କେହି ଉପାଦାନ ବିଷୟରେ ଆପଣା ବକ୍ତବ୍ୟ ପ୍ରଦାନ କରିଛନ୍ତି ।

ଏହା ନିର୍ଭୁଲ ହାତୀ ନହେଲେ ବି ହାତୀର କେତେକ ଅଙ୍ଗର-ପ୍ରତୀତିସଂଜାତ ରୂପ; ଏଥିରେ ସନ୍ଦେହନାହିଁ । ସେମିତି ଖଣ୍ଡିତ ଓ ଏକ ଦେଶଦର୍ଶୀ ହେଲେହେଁ ପ୍ରଦତ୍ତ ପରିଭାଷା ଗୁଡ଼ିକ କ୍ଷୁଦ୍ରଗଳ୍ପର ବିଭିନ୍ନ ଦିଗର ପରିଚୟ ପ୍ରଦାନରେ ବେଶ୍ ସମର୍ଥ ହୁଅନ୍ତି । ତହିଁରୁ ଏକ ସାର୍ବିକ ରୂପ ଅବଶ୍ୟ ପ୍ରତିଭାତ ହୁଏ ।

ସଂଗୃହୀତ ସଂଜ୍ଞାସବୁକୁ ଭାଷାନ୍ତର କରିଆରେ ଏବଂ ନର୍ଦ୍ଦିଷ୍ଟ ପ୍ରକାରର ଅନୁବର୍ତ୍ତୀ ଭାବରେ ପାଠକମାନଙ୍କ ପାଇଁ ପରିବେଷଣ କରାଯାଉଛି ।

**କ-ଆକାର ଓ ସମୟ ସମ୍ବନ୍ଧୀୟ ସଂଜ୍ଞା :**

(i) କୋଡ଼ିଏ ମିନିଟ ସମୟ ମଧ୍ୟରେ ପଢ଼ାଯାଇପାରୁଥିବା ଯେ କୌଣସି ସଂକ୍ଷିପ୍ତ କାଳ୍ପନିକ କଥା - ଏକ କ୍ଷୁଦ୍ରଗଳ୍ପ । (ଏଚ୍.ଜି.ୱେଲ୍ସ)

(ii) ଏହା ଏକ ବର୍ଣ୍ଣନାତ୍ମକ ଗଦ୍ୟରଚନା ଯାହା ପାଠକରି ଶେଷ କରିବାକୁ ଅଧଘଣ୍ଟାଏରୁ ଦୁଇଘଣ୍ଟା ଯାଏ ସମୟ ଆବଶ୍ୟକ ହୁଏ ।

(ଏଡ୍‌ଗାର ଆଲାନ୍ ପୋ)

(iii) ବର୍ଣ୍ଣିତ ବସ୍ତୁକୁ ଅତ୍ୟନ୍ତ ଉଜ୍ଜ୍ୱଳ ଓ ସମ୍ବେଦନକ୍ଷମ କରି ପାରୁଥିବା ଏକ ବିନୋଦନ କଳା । ଏହା ଭୟଙ୍କର, ଅଶ୍ଳୀଳ, କୌତୁକିଆ କିମ୍ବା ବଳିଷ୍ଠ ଭାବେ ଚିତ୍ରଣ ହୋଇପାରେ ତେବେ ଏହାର ଏହି ଲକ୍ଷଣ ଥିବା ଉଚିତ ଯେ, ଏହା ପନ୍ଦର ମିନିଟ୍‌ରୁ ପଚାଶ ମିନିଟ୍ ସୁଦ୍ଧା ପଢ଼ିହେଉଥିବ ।

(ଏଚ୍. ଜି. ୱେଲ୍ସ)

(iv) ପରିଣତ ଓ ସ୍ୱୟଂସଂପୂର୍ଣ୍ଣ ଏକ ସଂକ୍ଷିପ୍ତ ବର୍ଣ୍ଣନାଧର୍ମୀ ରଚନା ଯାହା ଏକାରାହାକେ, ପଢ଼ିହେଉଥିବ, ପାଠକ ଉପରେ ପ୍ରଭାବ ବିସ୍ତାର କରିବାକୁ ଲିଖିତ ଏହି ବର୍ଣ୍ଣନାରୁ ପ୍ରଭାବସୃଷ୍ଟି ଅକ୍ଷମ ସବୁକଥା ବାଦ ଦିଆଯାଇଥିବ ।

(ଏଡ୍‌ଗାର ଆଲାନ୍ ପୋ)

(v) କ୍ଷୁଦ୍ରଗଳ୍ପ ଗୋଟିଏ କାହାଣୀ, ଯାହା ଦୀର୍ଘ ନୁହେଁ ।

(ଜନ୍ ହାଡ୍‌ଫିଲ୍ଡ)

## ଖ - ରୂପଗତ ସଂଜ୍ଞା

(i) କ୍ଷୁଦ୍ରଗଳ୍ପ ଆଙ୍ଗିକ ଅପେକ୍ଷିତ । ଏହା ସଂହତି ଦରକାର କରେ । ବିଶୃଙ୍ଖଳା ଏହାର ବାଧକ । ଏହା ଉତ୍ତମ ଗଢ଼ଣ ଉପରେ ନିର୍ଭରଶୀଳ । ଏହା ଶିଥିଳ ପରିଣତି ବରଦାସ୍ତ କରେନାହିଁ । ଏହା ସ୍ୱୟଂସଂପୂର୍ଣ୍ଣ ହେବା ଜରୁରୀ ।

(ସମରସେଟ୍ ମମ୍)

(ii) କ୍ଷୁଦ୍ରଗଳ୍ପ ସଂକ୍ଷିପ୍ତ ହେଉ ବା ଦୀର୍ଘ, କାବ୍ୟିକ ବା ବିବରଣାତ୍ମକ, ଘାଟଣିକ ଅଥବା ଶୈଳିକ, ଦୃଢ଼ବଦ୍ଧ ଅଥବା ବୁଢ଼ିଆଣୀଜାଲ ସଦୃଶ ହୁଗୁଳା ହେଉ କିନ୍ତୁ ତାହାର ଥାଏ ଦୃଢ଼ ଏବଂ ଶାଶ୍ୱତ ପ୍ରବହମାନତା, ଯାହା ଜଣକଠାରୁ ଅନ୍ୟଜଣକ ଯାଏ ପ୍ରସରିଯାଏ ।

(ଏଚ୍. ଇ. ବେଟ୍‌ସ୍)

(iii) କ୍ଷୁଦ୍ରଗଳ୍ପର ନିଶ୍ଚିତପକ୍ଷେ ଏକ ନିର୍ଦ୍ଧାରିତ ଆକୃତି ରହିବା ବାଞ୍ଛନୀୟ । ଯହିଁରେ ଏକ ପ୍ରାରମ୍ଭ, ଶୀର୍ଷବିନ୍ଦୁ ଏବଂ ରସବିନ୍ଦୁ ଅନ୍ତର୍ଗତ; ଅନ୍ୟକଥାରେ କହିଲେ ଏହାର ନିଶ୍ଚିତ ଭାବେ ଏକ ପ୍ଲଟ୍ ବା କଥାବସ୍ତୁ ରହିବା ଉଚିତ ।

(ସମରସେଟ୍ ମମ୍)

## (ଗ) ଗୁଣଗତ ସଂଜ୍ଞା :

(i) ବିଶୁଦ୍ଧ ଗୀତିକବିତାର ଗୁଣଧର୍ମର ନିକଟବର୍ତ୍ତୀ କ୍ଷୁଦ୍ରଗଳ୍ପ । ଏହା ସମସ୍ୟା ଭିତ୍ତିକ ନୁହେଁ କି ସମାଧାନ ଦେବାକୁ ଉନ୍ମୁଖ ନୁହେଁ; ଏହା କେବଳ ମାନବୀୟ ପରିସ୍ଥିତିର ଚିତ୍ରଣ ମାତ୍ର କରିଥାଏ । (ଫ୍ରାଙ୍କ୍ ଓ' କନର)

(ii) ଯେକୌଣସି ଗୁଣାତ୍ମକ ବିଶ୍ଳେଷଣରେ କ୍ଷୁଦ୍ରଗଳ୍ପର ପ୍ରଥମ ସିଦ୍ଧାନ୍ତ ହେଉଛି ଲେଖକ ସ୍ୱନିର୍ବାଚିତ କଥା ଓ ଘଟଣାକୁ କେତେ ଅନିବାର୍ଯ୍ୟଭାବେ ପ୍ରେରକ କରାଇପାରୁଛି; ତାହାରି ପରିମାପ ।

(ଇ. ଜେ. ଓବ୍ରିୟେନ୍) .

(iii) କ୍ଷୁଦ୍ରଗଳ୍ପ ଜୀବନର ଅନୁଲେଖନ ନୁହେଁ ବରଂ ଜୀବନର କେତେକ ଦିଗର ସରଳୀକରଣ.... ଏହା ନାଟକୀୟ ଭାବେ ବ୍ୟବହୃତ ଏବଂ ପାଠକ ଉପରେ ଏକ ସମଗ୍ରତାର ପ୍ରଭାବ ବିସ୍ତାର କରୁଥିବା ଏକକ ପରିସ୍ଥିତି କିମ୍ବା ଅନୁଭୂତି କିମ୍ବା ଘଟଣାର ସାମଗ୍ରିକ ପ୍ରତୀତି ସୃଷ୍ଟି କରୁଥିବା ଏକକ ଉପାଖ୍ୟାନ ଉପସ୍ଥାପିତ କରେ ।

(ଆର. ଏଲ. ଷ୍ଟିଭେନ୍‌ସନ୍)

(iv) ଗୋଟିଏ କ୍ଷୁଦ୍ରଗଳ୍ପ ନିଶ୍ଚିତଭାବେ ଏକ ଏବଂ ଏକମାତ୍ର ପ୍ରେରଣାଦାୟୀ ଭାବ ଆଧାରିତ ହେବା ଉଚିତ ଏବଂ ସେହି ଭାବଟି ନିଶ୍ଚିତଭାବେ ତାହାର ଯୌକ୍ତିକ ପରିଣତି ପ୍ରତି ଏକକ ଲକ୍ଷ୍ୟ ବିଶିଷ୍ଟ କଥା ଉପାୟର ଏକମୁଖୀନତା ଯୁକ୍ତ ହୋଇ ଅଗ୍ରସର ହେବା ଉଚିତ ।

(ହଡ଼ସନ୍)

(v) ଏକ ସାର୍ଥକ କ୍ଷୁଦ୍ରଗଳ୍ପ ଉପନ୍ୟାସଠାରୁ ମୁଖ୍ୟତଃ ଏହାର ପ୍ରଭାବଐକ୍ୟ ପାଇଁ ପୃଥକ ହୋଇଥାଏ । କ୍ଷୁଦ୍ରଗଳ୍ପ ଏକକ ଚରିତ୍ର, ଏକକ ଘଟଣା, ଏକକ ଆବେଗ କିମ୍ବା ଏକକ ପରିସ୍ଥିତି ଆହୃତ ଆବେଗଶ୍ରେଣୀ ଆଧାରିତ ହୋଇଥାଏ ।

(ବ୍ରାଣ୍ଡର୍ ମାଥ୍ୟୁସ୍)

(vi) ଏହା ଆମକୁ ଅଣୁବୀକ୍ଷଣ ତଳେ ଦେଖିଲାପରି ଜୀବନକୁ ଦେଖାଏ ଏବଂ ଖାଲିଆଖିରେ ଦେଖିବାଠାରୁ ଅଧିକ ସ୍ୱଚ୍ଛଭାବେ ଦେଖିବାକୁ କ୍ଷମକରେ ।

(ସମରସେଟ୍ ମମ୍)

(vii) ଘଟଣାତ୍ମକ ଚମତ୍କାରିତାର ଚିତ୍ରଣ ହେଉଛି କାହାଣୀ; ଏବଂ ସାହିତ୍ୟର ସବୁ ଅଂଗପରି ଏହାର ମଧ୍ୟ ଆବଶ୍ୟକ ଗୁଣ ହେଉଛି - ରସ ।

(ଚନ୍ଦ୍ରଗୁପ୍ତ ବିଦ୍ୟାଳଙ୍କାର)

## (ଘ) ଉପାଦାନଗତ ସଂଜ୍ଞା :

(i) କ୍ଷୁଦ୍ରଗଳ୍ପ ଘୋଡ଼ାଦୌଡ଼ ପରି, ପ୍ରାରମ୍ଭ ଓ ପରିଣତି ହିଁ ଏହାର ସବୁଠୁ ଗୁରୁତ୍ୱପୂର୍ଣ୍ଣ ଅଂଶ ।

(ଏଲୋରି ସେଜ୍‌ଉଇକ୍)

(ii) କ୍ଷୁଦ୍ରଗଳ୍ପ ପ୍ରଥମେ ଗଳ୍ପ ହେବା ଉଚିତ । ଏହା ଘଟୁଥିବା ଘଟଣାବଳୀର ଆଲେଖ୍ୟ, ଘଟଣା ଓ ଦୁର୍ଘଟଣା ପୂର୍ଣ୍ଣ, କ୍ଷୀପ୍ରଗତିଶୀଳ, ଅନାକାଙ୍‌କ୍ଷିତ ଉନ୍ନତି ଯୁକ୍ତ, ଚରମ ମୁହୂର୍ତ୍ତଯାଏ ଉତ୍କଣ୍ଠାର ସହିତ ଅଗ୍ରଗାମୀ ଏବଂ ଏକ ପରିତୋଷଦାୟୀ ପରିଣତି ସଂପନ୍ନ ହେବା ଉଚିତ ।

(ସାର୍ ହ୍ୟୁ ୱାଲ୍‌ପୋଲ୍)

(iii) କ୍ଷୁଦ୍ରଗଳ୍ପର ପ୍ରଥମ ଆବଶ୍ୟକତା ହେଉଛି ଅପରିହାର୍ଯ୍ୟତା । ଗଳ୍ପ ନିଶ୍ଚିତତଃ ଏକ ଧାରଣା ଅଥବା ଉପଲବ୍ଧିରୁ ଉଦ୍ଭୁତ ହୋଇ ଲେଖକକୁ ଲେଖିବା ପାଇଁ ତୀବ୍ର ଓ ଯଥେଷ୍ଟ ଅନୁପ୍ରେରିତ କରୁଥିବ ।

(ଏଲିଜାବେଥ୍ ବୋଏନ୍)

(iv) ଚଳଚ୍ଚିତ୍ର ଓ କ୍ଷୁଦ୍ରଗଳ୍ପ ଏକା କଳାର ଅଭିବ୍ୟକ୍ତି । ତାହା ହେଉଛି କେତେକ ଶ୍ରେଣୀବଦ୍ଧ ଭଂଗୀ, ଛବି ଓ ସଂକେତର ସାମାନ୍ୟ ବର୍ଣ୍ଣନା ଓ ବିଶ୍ଳେଷଣ ସହିତ କାହାଣୀ କହିବା ।

(ଏଚ୍. ଇ. ବେଟ୍‌ସ୍)

(v) କ୍ଷୁଦ୍ରଗଳ୍ପ (କାହାଣୀ) ଘଟଣା ଅଥବା ଚରିତ୍ର ବିଶେଷର ସଂକ୍ଷିପ୍ତ ରସଯୁକ୍ତ ଚିତ୍ର ଅଟେ ।

(ଲଳିତା ପ୍ରସାଦ ସୁକୁଲ୍)

(vi) ଯାହା କଥିତ ତାହା କାହାଣୀ, ଯାହା ଲିଖିତ ତାହା କ୍ଷୁଦ୍ରଗଳ୍ପ ।

(ଏ. ଇ. କପାର୍ଡ଼)

## (ଙ) କଳା ଓ କାଳଗତ ସଂଜ୍ଞା :

(i) କ୍ଷୁଦ୍ରଗଳ୍ପ ଏକ ତରୁଣ କଳା, ଆମେ ଯାହା ଜାଣନ୍ତି, ଏହା ଏଇ ଶତାବ୍ଦୀର ଜନ୍ମିତ ।

(ମିସ୍ ଏଲିଜାବେଥ୍ ବୋଏନ୍)

(ii) ଇଂରାଜୀ କ୍ଷୁଦ୍ରଗଳ୍ପର ଇତିହାସ ଅତି ସଂକ୍ଷିପ୍ତ; ତାହାର ସରଳ କାରଣଟି ହେଉଛି ଊନବିଂଶ ଶତକର ସମାପ୍ତି ପୂର୍ବରୁ ଏହାର କୌଣସି ଇତିହାସ ହିଁ ନଥିଲା ।

(ଏଚ୍. ଇ. ବେଟ୍‌ସ୍)

(iii) ଯଥାର୍ଥ କ୍ଷୁଦ୍ରଗଳ୍ପ, ଆଧୁନିକ ସମୟର ଏକ ବା ଏକାଧିକ ଘଟଣାବଳୀର ସିଧାସଳଖ କାହାଣୀ ନୁହେଁ, ତାହା ଉଦ୍ଦେଶ୍ୟ ପ୍ରଣୋଦିତ ଭାବେ ପ୍ରଯୋଜିତ କଳାକର୍ମ ।

(ଏ. ଜେ. ଜେ. ରାଟ୍‌କ୍ଲିଫ୍)

ଉପର ସଂକଳିତ ୨୪ଟି ସଂଜ୍ଞା ବ୍ୟତୀତ ଇଂରାଜୀ ଏବଂ ଅନ୍ୟାନ୍ୟ ଭାଷାରେ କ୍ଷୁଦ୍ରଗଳ୍ପର ପର୍ଯ୍ୟାପ୍ତ ସଂଜ୍ଞା ରହିଛି । ଅଧିକ ଅବଗତ ହେବାପାଇଁ ଚାହୁଁଥିଲେ ଏହି ଗ୍ରନ୍ଥରେ ପ୍ରଣିଧାନ୍ୟ ଶିରୋନାମାଧିନ ଗ୍ରନ୍ଥସୂଚୀମତେ ଆଗ୍ରହୀମାନେ ଗ୍ରନ୍ଥାଧ୍ୟୟନ କରିପାରନ୍ତି ।

ତେବେ ଏଇ ଆଲୋଚକ ମତରେ-

(i) କ୍ଷୁଦ୍ରଗଳ୍ପ ବିଶ୍ୱସନୀୟ ଢଂଗରେ ପରିବେଷିତ ସଂକ୍ଷିପ୍ତ ଗଦ୍ୟକଥା ଯାହା ବାସ୍ତବ ହୋଇସୁଦ୍ଧା କାଳ୍ପନିକ ଓ କାଳ୍ପନିକ ହେଲେ ମଧ୍ୟ ବାସ୍ତବ ବିବେଚିତ ହୁଏ । ଗଳ୍ପରେ ବ୍ୟବହାର ହେବା ମାତ୍ରକେ ବାସ୍ତବ ଚରିତ୍ର ଓ ଘଟଣା କାଳ୍ପନିକ ପାଲଟିଯାନ୍ତି ଏବଂ ଗଳ୍ପରେ ବ୍ୟବହୃତ କାଳ୍ପନିକ ଚରିତ୍ର ଓ ଘଟଣା ଗଳ୍ପ ପରିସରରେ ବାସ୍ତବ ହୋଇଉଠନ୍ତି ।

(ii) ତିମାଇ ଆଠରୁ ୧୦ ପୃଷ୍ଠା ମଧ୍ୟରେ ସୀମିତ ଦୁଇ ବା ତିନୋଟି ଚରିତ୍ର ବିଶିଷ୍ଟ, ଗୋଟିଏ ମୁଖ୍ୟ ଘଟଣା ନିର୍ଭର, ଗୋଟିଏ ରସ ଆଧାରିତ, ବର୍ଣ୍ଣନାସଂଜ୍ଞତ, ବ୍ୟାଖ୍ୟାରହିତ, ଗୋଟିଏ ଦ୍ୱନ୍ଦ୍ୱ ନିର୍ଭର, ଆକସ୍ମିକ ଆରମ୍ଭ ଓ ସମାପ୍ତି ବିଶିଷ୍ଟ ଅନୁଭୂତିର ଗଦ୍ୟଲିଖନ ହେଉଛି କ୍ଷୁଦ୍ରଗଳ୍ପ ।

# ପ୍ରତିକ

ଆପାତ ଦୃଷ୍ଟିରେ କ୍ଷୁଦ୍ରଗଳ୍ପ ଯେମିତି ଦୃଶ୍ୟ ହୁଏ ତାହାର ଏକ ବିଚାର 'ଅବୟବ' ଶିରୋନାମ ଅଧୀନରେ କରାଯାଇପାରେ । ସ୍ମରଣ ରଖିବା ଉଚିତ ଯେ, ଏହା ଉପାଦାନ ନୁହେଁ । ଏଥିରେ ଅଙ୍ଗ ଓ ପ୍ରତ୍ୟଙ୍ଗ ବିଚାର ହୋଇଥିବାରୁ ଶିରୋନାମକୁ ପ୍ରତିକ ରଖାଯାଇଛି ।

ମୁଁ ପ୍ରତିକ ପ୍ରସଙ୍ଗଟିକୁ ନିମ୍ନମତେ ଉପସ୍ଥାପିତ କରିବି ।

୧- ନାମ ।

୨- ଆକାର ।

i - ଦୀର୍ଘ ii - ସଂକ୍ଷିପ୍ତ

୩- ଗଠନ ।

i - ପ୍ରାରମ୍ଭ ii - ପ୍ରବାହ iii - ପରିଣତି

**୧-ନାମ**

କ୍ଷୁଦ୍ରଗଳ୍ପର ଯେଉଁ ଅଂଶଟି ପ୍ରଥମେ ପାଠକଦୃଷ୍ଟି ଆକର୍ଷଣ କରେ ତାହା ତାର ନାମ ବା ଶିରୋନାମ ବା ଶୀର୍ଷକ ।

ଏହା କ୍ଷୁଦ୍ରଗଳ୍ପପ୍ରତି ପାଠକର ଆଗ୍ରହ ସୃଷ୍ଟି କରିବାକୁ ବିନିଯୁକ୍ତ । ଏହା ପୁଣି ସମୁଦାୟ ଗଳ୍ପର ଉଦ୍ଦେଶ୍ୟର ଇଙ୍ଗିତ ମଧ୍ୟ ହୋଇଥିବା ଉଚିତ । ଏଣୁ ଏହା ଏକ ସମୟରେ ସାଂକେତିକ ପୁଣି ସୂଚନାଦାୟକ । ସାଙ୍କେତିକ କାରଣ ଏହା ସବୁବେଳେ ଖଣ୍ଡିତ ପଦ ବା ପଦସମାବେଶ; ପୂର୍ଣ୍ଣବାକ୍ୟ ନୁହେଁ । ସୂଚନାଦାୟକ କାରଣ ସେତିକିରେ ହିଁ ତାହା ଗଳ୍ପର ଉଦ୍ଦେଶ୍ୟ ସଂପର୍କରେ ସାମାନ୍ୟ ହେଲେ ବି କିଛି ଇଙ୍ଗିତ କରିଥାଏ ।

କ୍ଷୁଦ୍ରଗଳ୍ପର ନାମ ଏକ ଅକ୍ଷର ବିଶିଷ୍ଟ ଏକଶବ୍ଦ ମାତ୍ର ହୋଇପାରେ ପୁଣି ଏକ ଦୀର୍ଘ ଖଣ୍ଡବାକ୍ୟ ମଧ୍ୟ ହୋଇପାରେ । ଏହା ପୂର୍ଣ୍ଣଚ୍ଛେଦ ଦ୍ୱାରା ଆଦୌ ସୂଚୀତ ହୁଏନାହିଁ ।

''ଡଁ'' - (ଗୋପୀନାଥ ମହାନ୍ତି)

"ଅଫେରା ଚାରୋଟି ପାଦର ମୁକ୍ତ ରଂଗୀନ ଆକାଶ ପାଇଁ ବେଳାଭୂମିର ବେଲୁନବାଲା ଓ ଚଣା ବିକାଳି ଝିଅ"

(କହ୍ନେଇଲାଲ ଦାସ)

ଏହା ବିଶେଷ୍ୟ, ବିଶେଷଣ ଏବଂ ସର୍ବନାମ ଆଦି ଯେକୌଣସି ପଦ ବା ପଦସମୂହ ହୋଇପାରେ । ଏଥିରେ ଚରିତ୍ର କିମ୍ବା ସ୍ଥାନ କିମ୍ବା କାଳ କିମ୍ବା ପ୍ରସଙ୍ଗ କିମ୍ବା ଉଦ୍ଦେଶ୍ୟ ସ୍ଥାନୀତ ବା ସୂଚୀତ ହୋଇଥାଏ । ଉଦାହରଣତଃ -

'ରେବତୀ' - ଫକୀର ମୋହନ ସେନାପତି (ଚରିତ୍ର)

'ନାଏଗ୍ରା ଓ ଦେବଯାନୀ' - କୃଷ୍ଣ ପ୍ରସାଦ ମିଶ୍ର (ସ୍ଥାନ ଓ ଚରିତ୍ର)

'୨୦୬୬' - ସୁରେନ୍ଦ୍ର ମହାନ୍ତି (କାଳ)

'ଦଶହରା ଭେଟି' - ରାଜକିଶୋର ରାୟ (ପ୍ରସଙ୍ଗ)

'ରୂପାନ୍ତର' - ରାମଚନ୍ଦ୍ର ବେହେରା (ଉଦ୍ଦେଶ୍ୟ)

କ୍ଷୁଦ୍ରଗଳ୍ପର ନାମ ନିଶ୍ଚିତଭାବେ ଆକର୍ଷକ ହେବା ଉଚିତ । ଏକପଦ ବା ଏକ ଯୁକ୍ତପଦ ବିଶିଷ୍ଟ ନାମ କ୍ଷୁଦ୍ରଗଳ୍ପକୁ ଅଧିକ ଆକର୍ଷଣୀୟ କରିଥାଏ । ('ରେବତୀ' - ଫକୀରମୋହନ; 'ରୁଟି ଓ ଚନ୍ଦ୍ର' - ସୁରେନ୍ଦ୍ର ମହାନ୍ତି)

ନାମକରଣରୁ ଗଳ୍ପର ପ୍ରକାର ମଧ୍ୟ ସୂଚୀତ ହୁଏ । ଶିରୋନାମ ଚରିତ୍ରର ନାମ ହୋଇଥିଲେ କ୍ଷୁଦ୍ରଗଳ୍ପ ଚରିତ୍ରଧର୍ମୀ ହୋଇଥାଏ । ସେହିପରି ଘଟଣାଧର୍ମୀ, ଦର୍ଶନଧର୍ମୀ, ଆବେଗଧର୍ମୀ ଅଥବା ଭାବଧର୍ମୀ ଗଳ୍ପ ବୋଲି ନାମକରଣରୁ ସୂଚନା ମିଳିଥାଏ ।

କ୍ଷୁଦ୍ରଗଳ୍ପକାର ନାମକରଣରେ ସତର୍କ ଓ ସଚେତନ ନହେଲେ ତାହାର ସାର୍ବିକ ରସଗ୍ରହଣ ବିଡ଼ମ୍ବିତ ହୁଏ ।

## ୨-ଆକାର

କ୍ଷୁଦ୍ରଗଳ୍ପ ସହିତ 'କ୍ଷୁଦ୍ର' ଶବ୍ଦଟି ଯୁକ୍ତଥିବା ସତ୍ତ୍ୱେ କ୍ଷୁଦ୍ରଗଳ୍ପର ଆକାର ଆୟତନ ନେଇ କୌଣସି ସ୍ଥିର ନିୟମ ନାହିଁ । ରଚନାଟି ଯେତେ ଦୀର୍ଘ ହେଉନା କାହିଁକି ଯଦି ତହିଁରେ କାଳ, ଘଟଣା, ଚରିତ୍ରର ଏକତ୍ୱ ରହିଛି ତେବେ ତାହା କ୍ଷୁଦ୍ରଗଳ୍ପ । ବସ୍ତୁତଃ କ୍ଷୁଦ୍ରଗଳ୍ପ ଏକ କଳା ଏବଂ ଏହାର ପ୍ରକାଶ ଦୁଇ ବିପରୀତ ବୋଧକ ରୂପକୁ ସୁଦ୍ଧା ଅଙ୍ଗୀଭୂତ କରିସାରିଛି ।

କ୍ଷୁଦ୍ରଗଳ୍ପର ଦୁଇଟି ରୂପ : i - ସଂକ୍ଷିପ୍ତାୟତନ ii - ଦୀର୍ଘାୟତନ ।

### (i) ସଂକ୍ଷିପ୍ତାୟତନ ବିଶିଷ୍ଟ ଗଳ୍ପ :

ଯେକୌଣସି ସାହିତ୍ୟକୃତିର ବକ୍ତବ୍ୟକୁ ଅତି ସଂକ୍ଷେପରେ ପ୍ରକାଶ କରିହେବ । ଅତଏବ ବକ୍ତବ୍ୟର ଚମତ୍କାରିତାଟିକୁ କେବଳ ପ୍ରକାଶ କରିଦେଲେ ତାହା ମଧ୍ୟ

ସ୍ୱୟଂସଂପୂର୍ଣ୍ଣ ଏକ ଆଙ୍ଗିକ ହୋଇପାରେ - ଏଇଭଳି ଏକ ସମ୍ଭାବନାରୁ କ୍ଷୁଦ୍ରଗଳ୍ପରେ ଆକାରହ୍ରସ୍ୱ ଧାରା ସୃଷ୍ଟି ହୋଇଥିବା ସମ୍ଭବ । ତେବେ ଏହାର ପ୍ରକାଶ ଘଟିଛି ଦୁଇଟି ରୂପରେ : କ-ଆଭାସ ଗଳ୍ପ ଓ ଖ-ମିନିଗଳ୍ପ ।

**କ-ଆଭାସ ଗଳ୍ପ :**

ନାମରୁ ହିଁ ସୂଚନା ମିଳୁଛି ଯେ ଏହା ଗଳ୍ପ ନୁହେଁ ଗଳ୍ପାଭାସ । ଏଥିରେ ପୂର୍ଣ୍ଣାଙ୍ଗ ଗଳ୍ପଟିଏ ସୂଚନାତ୍ମକ ରୀତିରେ ଥାଏ । ଏହା କଥାକାରର ଏକାନ୍ତ ବ୍ୟକ୍ତିଗତ ଚିନ୍ତାନୁଭୂତିକୁ ସ୍ଥାନୀତ କରେ । ଏହାର ଭାଷା କାବ୍ୟିକ । ଶବ୍ଦ ସାଶ୍ରୟତା ଏହାର ବୈଶିଷ୍ଟ୍ୟ । ଅଧିକାଂଶତଃ ଏହା ଆତ୍ମସଂଳାପଧର୍ମୀ । ଲେଖକର ଆବେଗ ପ୍ରତି ଏହା ଅଧିକ ବିଶ୍ୱସ୍ତ । ପ୍ରତିକ ଓ ଚିତ୍ରକଳ୍ପ ପ୍ରୟୋଗ ପାଇଁ ଏହା ସଦା ଉନ୍ମୁକ୍ତ ।

ଆଭାସଗଳ୍ପ ସାଧାରଣତଃ ମନସ୍ତାତ୍ତ୍ୱିକ । ଯେକୌଣସି କ୍ଷଣିକ ଅନୁଭୂତି, ଆବେଗ ଏବଂ ପ୍ରତିକ୍ରିୟାରୁ ଆଭାସଗଳ୍ପ ସୃଷ୍ଟି ହୋଇପାରେ । କଥାକାର ଏହି ରୀତିରେ କେବଳ ଅସଲ ଘଟଣାଟିର ଆଭାସ (ସୂଚନା) ଦେଇ ପରିଣତି ସଂପର୍କରେ ପାଠକକୁ ଭାବି ସ୍ଥିର କରିବାକୁ ଛାଡ଼ିଦିଏ । ଏଣୁ ଆଭାସଗଳ୍ପ ଏକ ଗଳ୍ପ କହିବା ଅପେକ୍ଷା ପାଠକପ୍ରାଣରେ ଉପସ୍ଥାପିତ ପ୍ରସଙ୍ଗରୁ ଗଳ୍ପଟିଏ ସର୍ଜନକରିବାର ପରିବେଶ ସୃଷ୍ଟି କରାଏ ।

ଆଭାସଗଳ୍ପ 'ଶୈଳୀ ମୁଖ୍ୟ' ଓ 'ଭାବ ମୁଖ୍ୟ' ଏଭଳି ଦୁଇ ରୀତିରେ ରଚିତ ହୋଇପାରେ । ଭାବମୁଖ୍ୟ ଆଭାସଗଳ୍ପ ସଂକ୍ଷିପ୍ତ ଘଟଣାଟିଏ ଏବଂ କ୍ଷଣିକ ଅନୁଭୂତି ବା ଚିନ୍ତନକୁ ଆଧାର କରିଥାଏ ।

ଉଦାହରଣତଃ ଡ଼ଃ କୃଷ୍ଣପ୍ରସାଦ ମିଶ୍ରଙ୍କ 'ପାହାଚ' ଗଳ୍ପ—

### ପାହାଚ

"ସେମାନଙ୍କ ପାଦତଳେ ମାର୍ବଲ ପାହାଚ, କେବେ ସୁନାର, କେବେ ରୁପାର, କେବେ ଲୁହା, କେବେ ପଥରର ପାହାଚ ରହିଆସିଛି । ସେମାନେ ପାହାଚ ପାହାଚ ହୋଇ ଉପରକୁ ଚଢୁଛନ୍ତି । ଏବେ ସୁନା, ରୁପା, ଲୁହା, ପଥର ନୁହେଁ, ମାର୍ବଲ ପଥର ତ ନୁହେଁ । ଏବେ ସାଧାରଣ ଲୋକେ ସେମାନଙ୍କ ପାଦ ତଳେ ପାହାଚ । ଶିଖରକୁ ଯିବା ପାଇଁ ହରିଜନ, ଆଦିବାସୀ, ଚାଷୀ, ମୁଲିଆ, ଶ୍ରମିକ, ଗରିବ, ମଧ୍ୟବିତ୍ତ, ଜାତିଜାତିକା କେତେ ଆବୁଡ଼ା ଖାବୁଡ଼ା ପାହାଚ ।

କିନ୍ତୁ ମନେରଖିବା କଥା ପାହାଚ ବାଟେ ଉପରକୁ ଚଢ଼ାଯାଏ, ଆଉ ତଳକୁ ଓହ୍ଲାଯାଏ ମଧ୍ୟ ।"

ଅନ୍ୟ ପକ୍ଷରେ ଶୈଳୀମୁଖ୍ୟ ଆଭାସ ଗଳ୍ପ ବକ୍ତବ୍ୟର ଶାଣିତତା ସହିତ ପ୍ରକାଶଶୈଳୀର ଚମତ୍କାରିତା ଉପରେ ଗୁରୁତ୍ୱ ଆରୋପ କରିଥାଏ । 'ହରଣ' ଗଳ୍ପ ତହାର ଏକ ଉତ୍କୃଷ୍ଟ ନମୁନା ।

ହରଣ

| ବେକାରୀ | ଅର୍ଥନୀତି । ଶ୍ରେଣୀ ବୈଷମ୍ୟ<br>ଦୁର୍ନୀତି । ପ୍ରିୟାପ୍ରିତି | ବିପ୍ଳବ |
|---|---|---|

ଛାତ୍ରହତ୍ୟା । ଶ୍ରମିକ ଆନ୍ଦୋଳନ
ଲାଠିଚାର୍ଯ । ଟିଅର ଗ୍ୟାସ୍
ବିକ୍ଷୋଭ । ଗୁଳି
ସରକାର । ଗାଦିଚ୍ୟୁତ

ରକ୍ତ

**ଖ-ମିନିଗଳ୍ପ :**

'ମିନିଗଳ୍ପ'ରୁ ଜଣାପଡୁଛି ଏହା ଟିକି ଗପଟିଏ । ଟିକି କିନ୍ତୁ ଗପଟିଏ । ସେତିକି ଟିକି ଯେତିକିରୁ ଊଣା ହେବା ଚଳିବନାହିଁ, ସେତିକି ଗପ ଯେତିକି ପାଇଁ ଅଧିକ କଥନ ଅନାବଶ୍ୟକ ।

ମିନିଗଳ୍ପରେ ଚେତନାର ଏକ ଖଣ୍ଡିତାଂଶ ରୂପାୟିତ ହୁଏ । ଏହା କଥାକାରର ଭାବ ପ୍ରକାଶ କରୁଥିବା ଏକ ଘନପୀନଦ୍ଧ, ସୁସଂହତ ଓ ମିତବାକ୍ ଗଳ୍ପକଳା ।

ମିନିଗଳ୍ପ ମଧ ବୈୟକ୍ତିକ କିମ୍ବା ବସ୍ତୁଭିତ୍ତିକ ହୋଇପାରେ । ତେବେ କଥାକାରର ଦୃଷ୍ଟିକୋଣ ତାହା ନିର୍ଣ୍ଣୟକରେ ।

ଏହା ଅତ୍ୟନ୍ତ ସଂକ୍ଷିପ୍ତାୟତନ ବିଶିଷ୍ଟ । 'ବିନ୍ଦୁମଧରେ ସିନ୍ଧୁ' ଓ 'ଗୋଡ଼ି ଭିତରେ ଗିରି'ର ପ୍ରତୀତି ଦିଏ ବୋଲି କ୍ଷୁଦ୍ରଗଳ୍ପର ଯେଉଁ ଲାକ୍ଷଣିକତା ରହିଛି ଏଇ ମିନିଗଳ୍ପ ହିଁ ତାହାର ଯଥାର୍ଥ ପ୍ରମାଣ । ଏହା ଏକଧାଡ଼ି ବିଶିଷ୍ଟ । ବେଳେବେଳେ ୨/୪ ଧାଡ଼ି ମଧରେ ସୀମିତ । ସଂକ୍ଷିପ୍ତ କଳେବର ଯୋଗୁଁ ଇଙ୍ଗିତ ଧର୍ମୀତାକୁ ପ୍ରଶ୍ରୟ ଦିଏ । ଏଣୁ ବିରାମଚିହ୍ନ ବହୁଳ ହୁଏ । ବିଶେଷ କରି ହାଇଫେନ୍, ବିସ୍ମୟବାଚକ ଓ ପ୍ରଶ୍ନବାଚକ ଚିହ୍ନ, ଉଦ୍ଧୃତି ଏବଂ ବନ୍ଧନୀ ଚିହ୍ନ ତହିଁରେ ମୁଖ୍ୟ ।

ଏହାର ଭାଷା କାବ୍ୟିକ । ଉପସ୍ଥାପନା ଆକସ୍ମିକ ଏବଂ ଉପସଂହାର ଅନାକାଙ୍କ୍ଷ ହୋଇଥାଏ । ଚରିତ୍ର ରହିପାରେ ରହିନପାରେ ମଧ । ଥିଲେ ପୂର୍ଣ୍ଣ ପରିଚୟ ଦେବା ଅପେକ୍ଷା ଆଂଶିକ ରୂପାୟନ ଯଥେଷ୍ଟ ହୁଏ । ଅଧିକାଂଶରେ ସର୍ବନାମ ପଦରେ ଚରିତ୍ରଟି

ପରିଚିତ ହୁଏ । ତାର ନାମଧାମ ଗୁଣଗ୍ରାମ ପ୍ରକାଶ ପାଇଁ ମଧ୍ୟ ଅବକାଶ ଦିଆଯାଏ ନାହିଁ ।

ଗୁରୁତ୍ୱପୂର୍ଣ୍ଣ ବକ୍ତବ୍ୟକୁ ଚୁମ୍ବକରେ ପ୍ରକାଶ କରିବା, ମନରାଜ୍ୟର ଭାବନା ବା ଚେତନାର ଉଦୟନ ମାତ୍ରକେ ତାହାର ଅବିକଳ ଉପସ୍ଥାପନା, ଯେ କୌଣସି ଆବେଗ ପ୍ରତି ଉନ୍ମୁକ୍ତ ରହିବା ଏବଂ କଥା ପରିଣତିରେ ତୃପ୍ତି ବିଧାନ ଅପେକ୍ଷା କୌତୂହଳ ସୃଷ୍ଟିକରିବା ମିନିଗଳ୍ପର ମହତ୍ତ୍ୱ ସାବ୍ୟସ୍ତ କରେ ।

**ଜ୍ୟୋତିଷଙ୍କ ଡ଼ାଏରୀ**

ମୋ ବନ୍ଧୁ ଜ୍ୟୋତିଷୀ ଜାଣନ୍ତି ବୋଲି କହନ୍ତି । ମୋ ହାତ ଦେଖି ସେଦିନ କହିଲେ—'ଦେଖ ଅବିନାଶ ! ତମେ ଯେମିତି ଭାବ ଅରୁଣା ତମୁକୁ ଏ ପୃଥିବୀରେ ସବୁଠୁ ବେଶୀ ଭଲପାଏ, ତାହା ସତ ନୁହେଁ । ତମେ ଖୁବ୍ ଶୀଘ୍ର ପ୍ରେମରେ ଧୋକା ଖାଇବ । ତମର ଅନ୍ତରଙ୍ଗ ବନ୍ଧୁ ତମର ପ୍ରତିଦ୍ୱନ୍ଦୀ ହେବେ ।'

ସେଇଦିନ ରାତିରେ ବନ୍ଧୁଙ୍କର ଡ଼ାଏରୀ ଖଣ୍ଡକ ମୋ ହାତରେ ପଡ଼ିଗଲା ।

ପୃଷ୍ଠା ୧ - ଅରୁଣା ମୋ ପାଖକୁ ପ୍ରେମ ଚିଠିଟିଏ ଲେଖିଛି ।

ପୃଷ୍ଠା ୨୧ - ଅରୁଣା ମୋର ଆଉରି ନିକଟ ହୋଇଆସୁଚି ।

ପୃଷ୍ଠା ୩୧ - ଅବିନାଶ କ'ଣ ମୋ ଠାରୁ ଅରୁଣା ପାଇଁ ବେଶି ଯୋଗ୍ୟ ହେବ ?

(ପ୍ରକାଶ କୁମାର ପରିଡ଼ା)

ଦୁଇତିନି ପୃଷ୍ଠାରେ ବିନ୍ୟସ୍ତ କେତେକ ସଂକ୍ଷିପ୍ତ ଗଳ୍ପ ମଧ୍ୟ ଥାଏ ଯାହା 'ମିନି' କିମ୍ବା 'ଆଭାସ' ଗଳ୍ପ ପର୍ଯ୍ୟାୟର ନୁହେଁ । ସେଗୁଡ଼ିକ ସ୍ୱାଭାବିକ ଗଳ୍ପ । ଏଭଳି ଗଳ୍ପ ଦକ୍ଷ ଶିଳ୍ପୀହାତର ଅପେକ୍ଷା ରଖେ ।

## (ii) ଦୀର୍ଘାୟତନ ବିଶିଷ୍ଟ ଗଳ୍ପ :

ଗଳ୍ପର ପରିସର ସ୍ୱାଭାବିକ ଆକାରରୁ ଅଧିକ ହେଲେ ତାହା ଦୀର୍ଘଗଳ୍ପ ନାମରେ ପରିଚିତ ହୁଏ । ଦୀର୍ଘଗଳ୍ପ କିନ୍ତୁ 'ଉପାନ୍ୟାସିକା' କିମ୍ବା 'ସଂକ୍ଷିପ୍ତ ଉପନ୍ୟାସ' ନୁହେଁ । ଏହା ଏକ ପ୍ରଲମ୍ବିତ ଗଳ୍ପ କିମ୍ବା ସ୍ୱାଭାବିକ ଆକାର ମଧ୍ୟରେ ସୀମିତ ରହିବାକୁ ଅକ୍ଷମ ଗଳ୍ପ ।

ବର୍ଣ୍ଣନା ପଲ୍ଲବନ, ଚରିତ୍ରର ବିକାଶକ୍ରମ ପ୍ରଦର୍ଶନ, ଦୀର୍ଘକାଳ ଗ୍ରହଣ, ବହୁଘଟଣା ସମାବେଶ, ଏକାଧିକ ସମପ୍ରାଧାନ୍ୟ ବିଶିଷ୍ଟ ଚରିତ୍ର ଆରୋପଣ, ଏକାଧିକ ଦ୍ୱନ୍ଦ୍ୱର ସଂଯୋଜନ ପ୍ରଭୃତି ଆଙ୍ଗିକଗତ କାରଣରୁ ଦୀର୍ଘଆୟତନ ବିଶିଷ୍ଟ ଗଳ୍ପ ସୃଷ୍ଟିହୁଏ । ଏହି ଅବକାଶ ସୃଷ୍ଟି ହୁଏ; ମନସ୍ତାତ୍ତ୍ୱିକ ଗଳ୍ପରେ ଚରିତ୍ରର ମନୋବିଶ୍ଳେଷଣ ଓ ଚେତନାପ୍ରବାହ

ଧାରା ଅନୁସୃତି, ସ୍ଥିତିବାଦୀ ଗଳ୍ପରେ ମଣିଷର ଆତ୍ମପ୍ରତିଷ୍ଠା ପାଇଁ ଶେଷହୀନ ସଂଗ୍ରାମର କ୍ରମିକତା ଓ ପରିବେଶଗତ ବାସ୍ତବବାଦୀ ଗଳ୍ପରେ ପରିବେଶର ବିଶଦ ବର୍ଣ୍ଣନାର ସଂଯୋଜନ ହେତୁ ।

ଉଦାହରଣ ସ୍ୱରୂପ—'ରାଗଡୋଡ଼ି'—ରବି ପଟ୍ଟନାୟକ, 'ଖୋର୍ଦ୍ଧା ଲୁଙ୍ଗିପିନ୍ଧା ଲୋକର ଠିକଣା'—ଜଗଦୀଶ ମହାନ୍ତି, 'କପୋତ ପକ୍ଷୀ ଗୁରୁ ମୋର'—ମହାପାତ୍ର ନୀଳମଣି ସାହୁ ଓ 'ଚତୁର୍ଥ ବନ୍ଧୁ'—ମନୋଜ ଦାସ ପ୍ରଭୃତି ଏହି ଧାରାର ଉତ୍କୃଷ୍ଟ ଗଳ୍ପ ।

ଦୀର୍ଘ ଗଳ୍ପ ଷାଠିଏ ପୃଷ୍ଠାରୁ ଊର୍ଦ୍ଧ୍ୱ ହେବାର ଉଦାହରଣ ରହିଛି । ('ଆଲ୍‌ବମ୍‌ରେ କେତୋଟି ମୁହଁ'; ଜଗଦୀଶ ମହାନ୍ତି) ତେବେ ୧୫ପୃଷ୍ଠାରୁ ଊର୍ଦ୍ଧ୍ୱଗଳ୍ପକୁ ଦୀର୍ଘାୟତନ ବିଶିଷ୍ଟ ଗଳ୍ପ ଶ୍ରେଣୀରେ ନିଆଯିବା ଉଚିତ ।

ତୃପ୍ତିବିଧାନ ଦୃଷ୍ଟିରୁ ସ୍ୱାଭାବିକ କ୍ଷୁଦ୍ରଗଳ୍ପ ଠାରୁ ଦୀର୍ଘଗଳ୍ପ ଅନେକସମୟରେ ଉତ୍ତୀର୍ଣ୍ଣ ହୋଇଥାଏ । ଏହା କେତେକ ସମୟରେ କ୍ଳାନ୍ତିକର ମଧ୍ୟ ହୋଇଥାଏ । ସଚେତନ ନହେଲେ ଦୀର୍ଘଗଳ୍ପ ସଂକ୍ଷିପ୍ତ ଉପନ୍ୟାସ ପାଲଟିଯିବାର ଆଶଙ୍କା ମଧ୍ୟ ରହିଛି; ଏଣୁ ଦୀର୍ଘଗଳ୍ପ ରଚନା ଯଥେଷ୍ଟ ସତର୍କତା ଦରକାର କରେ ।

## ୩-ଗଠନ ରୀତି

ଲେଖକ ତାର ଅଭିପ୍ରାୟକୁ ପାଠକଠାରେ ଅଭିଷିକ୍ତ କରିବାକୁ ଯେଉଁ କେତେକ ମାର୍ଗ ଅବଲମ୍ବନ କରିଛି ସେଗୁଡ଼ିକର ଗଠନରୀତି ହିଁ ସଂପୃକ୍ତ ମାର୍ଗର ସ୍ୱତନ୍ତ୍ରତା ତଥା ସ୍ୱକୀୟତା ।

ଉଦାହରଣତଃ ଗଦ୍ୟଠାରୁ ପଦ୍ୟ ତାର ଗଠନଗତ ରୀତି ପାଇଁ ପୃଥକ । ସେହିଭଳି ନାଟକ ଓ ଉପନ୍ୟାସ ଉଭୟର ଗଠନରୀତି ପାଇଁ ଗୋଟିଏ ଦୃଶ୍ୟଧର୍ମୀ ଓ ଅନ୍ୟଟି ବର୍ଣ୍ଣନାଧର୍ମୀ ବୋଲି ସ୍ୱୀକୃତ । ଅତଏବ ସବୁ ସାହିତ୍ୟକୃତିର ଏକ ନିର୍ଦ୍ଦିଷ୍ଟ ଗାଠନିକ ଆକୃତି ଥାଏ ଯାହା ତାହାର ଚିହ୍ନଟ ଦେଇଥାଏ । ଏହାହିଁ ବିଷୟ ପ୍ରବେଶ ପୂର୍ବରୁ ରଚନାଟିର ପ୍ରକୃତି ସଂପର୍କରେ ପାଠକକୁ ସୂଚୀତ କରିଥାଏ ।

କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ତାହାର ଗଠନ ରୀତିର ଏକ ବିଶେଷ ଭୂମିକା ରହିଛି । ସାଧାରଣତଃ କ୍ଷୁଦ୍ରଗଳ୍ପ ଏକ ପ୍ରସଙ୍ଗରୁ ଆରମ୍ଭ ହୁଏ, କଥାର ଅଗ୍ରଗତି ସହିତ ଗୃହୀତ ପ୍ରସଙ୍ଗଟି ସ୍ପଷ୍ଟହୁଏ ଏବଂ ପରିଣତିରେ ପ୍ରସଙ୍ଗାନୁରୂପ କିମ୍ବା ପ୍ରସଙ୍ଗପ୍ରତିରୂପ ଏକ ସିଦ୍ଧାନ୍ତ ସୃଷ୍ଟିକରେ । ପାଠକୀୟ ପୂର୍ବାନୁମାନ ଓ ଆଶାକୁ ଦୃଢ଼ୀଭୂତ କିମ୍ବା ଚୂର୍ଣ୍ଣିଭୂତ କରି କଥାବସ୍ତୁଗତ ଏବଂ ରସଗତ ଚମକ ସଂପ୍ରେରିତ କରାଏ କ୍ଷୁଦ୍ରଗଳ୍ପ । ତେଣୁ କ୍ଷୁଦ୍ରଗଳ୍ପର ପ୍ରାରମ୍ଭ ଆକର୍ଷକ, ପ୍ରବାହ ସାବଲୀଳ ଏବଂ ପରିଣତି ଅତର୍କିତ ହେବା ତାହାର ସାର୍ଥକତା । ପୁନଶ୍ଚ ଏହି ତିନି ଗୁଣ ସୁଷମ ଭାବେ ଏକ କ୍ଷୁଦ୍ରଗଳ୍ପରେ ରହିବା ଜରୁରୀ ।

କିନ୍ତୁ କ୍ଷୁଦ୍ରଗଳ୍ପର ପ୍ରାରମ୍ଭ-ପ୍ରବାହ-ପରିଣତି ତାହାର କଥାଭାଗଗତ ପ୍ରାରମ୍ଭ-ବିକାଶ-ପୂର୍ଣ୍ଣତା ସହିତ ଏକାବେଳକେ ସମାନ ନୁହେଁ । କେତେକ ଗଳ୍ପ କଥାଭାଗର ମଧ୍ୟାଂଶରୁ ଆରମ୍ଭ ହୋଇଥାଏ ତ କେତେକ ଗଳ୍ପ କଥାଭାଗର ପ୍ରାରମ୍ଭରୁ ଆରମ୍ଭ ହୋଇଥାଏ । ଏଣୁ କ୍ଷୁଦ୍ରଗଳ୍ପର ପ୍ରାରମ୍ଭ କହିଲେ କଥାଭାଗର ପ୍ରାରମ୍ଭ ନୁହେଁ, କିମ୍ବା କଥାଚରିତ୍ରର ଆଦ୍ୟ ପରିଚୟଦାନ ନୁହେଁ କିମ୍ବା ଘଟଣାର ପ୍ରଥମ ଉନ୍ମେଷ ନୁହେଁ । ଅନୁରୂପ ଭାବେ ପ୍ରବାହ ଓ ପରିଣତି ପ୍ରସଙ୍ଗ ମଧ୍ୟ କଥାଭାଗର ବିକାଶ ଓ ପୂର୍ଣ୍ଣତା ସହିତ ସମାନ ନୁହେଁ । ନିମ୍ନମତେ ତାହା ସ୍ପଷ୍ଟ କରି ଦିଆଯାଇପାରେ ।

**(i) ପ୍ରାରମ୍ଭ :**

ଗଳ୍ପର ପ୍ରାରମ୍ଭ ବା ଉପୋଦ୍‌ଘାତୀ ପର୍ବ ହିଁ ସମୁଦାୟ ଗଳ୍ପ ପ୍ରତି ପାଠକର ଆଗ୍ରହ ଆକର୍ଷିତ କରିଥାଏ । ପ୍ରାରମ୍ଭ ଆକର୍ଷକ, କୌତୂହଳୋଦ୍ଦୀପକ ଏବଂ ଆଗ୍ରହସଞ୍ଚାରୀ ନହେଲେ ପାଠକ ବିତସ୍ପୃହ ହୋଇ ଗପଟି ଏଡ଼େଇ ଯାଇପାରେ । କ୍ଷୁଦ୍ରଗଳ୍ପରେ ପ୍ରାରମ୍ଭର ଗୁରୁତ୍ୱ ସଂପର୍କରେ କୁହାଯାଇଛି - 'କ୍ଷୁଦ୍ରଗଳ୍ପ ଏକ ଘୋଡ଼ାଦୌଡ଼ ଭଳି ଯହିଁରେ ଆରମ୍ଭ ଓ ଶେଷ ସବୁଠୁ ମହତ୍ତ୍ୱପୂର୍ଣ୍ଣ ।' (ଏଲୋରି ସେଜ୍‌ଉଇକ୍)

ଗଳ୍ପର ପ୍ରାରମ୍ଭ ବିଭିନ୍ନ ପ୍ରକାରରେ କରାଯାଇପାରେ । ଏହା ଏକ ପଦ, ଶବ୍ଦ ବା ବାକ୍ୟ ସମ୍ବଳିତ ହୋଇପାରେ କିମ୍ବା ଏକ ସଂକ୍ଷିପ୍ତ ଅଥବା ଦୀର୍ଘ ଅନୁଚ୍ଛେଦ ମଧ୍ୟ ହୋଇପାରେ ।

''ବଢ଼ି ଅନ୍ଧାରୁ ।''—'ଡଁ' : ଗୋପୀନାଥ ମହାନ୍ତି ।

''ଜବାହରଲାଲଙ୍କର ନୂଆ ବହି 'ଭାରତ ଆବିଷ୍କାର' Discovery of India ...''—'ଭାରତ ଆବିଷ୍କାର' : ସୁରେନ୍ଦ୍ର ମହାନ୍ତି ।

''ଭଦ୍ର ମହିଳା ମୋତେ ପ୍ରଥମରୁ ହିଁ ସଞ୍ଜୟ ବୋଲି ଧରି ନେଇଥିଲେ । ମୋର ସେଥିରେ ପ୍ରତିବାଦ ମଧ୍ୟ କରିବାକୁ ସାହସ ନଥିଲା ।''—'ଡ଼ିମିରି ଫୁଲ' : ଅଖିଳମୋହନ ପଟ୍ଟନାୟକ ।

''ୟାକୁବ୍ ଖୁବ୍ ଜୋରରେ ଆଖି ରଗଡ଼ି ଦେଲା । ହାତୁଆ ପାପୁଲି ଉପରେ ଓହଳି ପଡ଼ିଲା ସିଠାଳିଆ ଚମର ମାଡ଼ପାଇ ଆଖି ଟିକିଏ ଅଠା ଅଠା ହୋଇଉଠିଲା । ଦୁଇ ଚାରିଥର ପତାକୁ ମିଟ୍‌ମିଟ୍ କରି ସେ ପାଣି କଟେଇ ନେଲା । x x x ସେ ଯାହା ଦେଖିଛି ସବୁ ନିଭେଇ ଦବ । ଛୋଟ ପିଲା ପାଣି କନାରେ ସ୍ଲେଟ୍ ଘଷିଲା ଭଳି ମୁଣ୍ଡକୁ ହଲେଇ ହଲେଇ ସେ ଆଖି ଉପରେ ହାତ ମଳିଲା ।'' (୪୪ ଧାଡ଼ି ବ୍ୟାପୀ)—'ୟାକୁବ୍‌ର ଆଖି' : ଅଚ୍ୟୁତାନନ୍ଦ ପତି ।

ଦୀର୍ଘତମ ପ୍ରାରମ୍ଭ ଅନୁଚ୍ଛେଦ ଭାବେ ଗୋପୀନାଥଙ୍କର 'ଦୋଳ ଗୋବିନ୍ଦ' ଗପକୁ ନିଆଯାଇପାରେ । ଏହା ୭୭ ଧାଡ଼ି ବିଶିଷ୍ଟ ।

ଏଥିରେ ପ୍ରଥମରୁ ଗଳ୍ପର ପଞ୍ଜର, ବକ୍ତବ୍ୟ, ଚରିତ୍ରଚିତ୍ର ସୂଚୀତ କରାଯାଇଥାଏ କିମ୍ବା ଏକ ପ୍ରଶ୍ନବାଚୀ, ଜିଜ୍ଞାସା, ଦର୍ଶନ, ମନ୍ତବ୍ୟ, ଦୃଶ୍ୟ-ଚିତ୍ର, ଘଟଣାଭାସ ଅଥବା ସଂଳାପାଂଶ ଉପସ୍ଥାପିତ କରି ପାଠକକୁ ବିଷୟ ପ୍ରତି କୌତୂହଳୀ କରାଯାଇଥାଏ ।

''[ଗପଟି ପଢ଼ିବା ପୂର୍ବରୁ, ବିଜ୍ଞଜନେ, ଫକୀରମୋହନଙ୍କ—''ରାଣ୍ଡୀପୁଅ ଅନନ୍ତା'' ଗପଟିକୁ ମନେ ପକାନ୍ତୁ ।]''

'ପାଶବିକ' : ଜଗଦୀଶ ମହାନ୍ତି ।

''ଗଛର ଶିଖଟାକୁ ହାଣିଦେଲେ ସେ ଯଦି ମରିଯାଉଥାନ୍ତା ତେବେ ବୁଝିବାକୁ ଅସୁବିଧା ନଥିଲା । ମଣିଷଟାର ମଥା ହାଣିଦେଲେ ସେ ପୁଣି ମରୁଚି ନା ନାହିଁ ! କିନ୍ତୁ ଗଛର ବଞ୍ଚିବା ମରିବା ଢ଼ଙ୍ଗ ଅଲଗା । ତା ପ୍ରାଣ ଡ଼ାଳପତ୍ରରେ ନଥାଏ, ଥାଏ କାହିଁ କେଉଁ ଗହୀରରେ ମାଟି ଭିତରେ । ଏଣୁ ହଣାହଣିରେ କିଛି କଥା ନାହିଁ । ପାତାଳରୁ ତା'ର ସେ ଚେର ଉପୁଡ଼ିବ, ତେବେ ଯାଇ ସେ ମରିବ, ନ ହେଲେ ନାହିଁ ।''

'ମୁଁ ସିନା ଚିର ଅପରାଧୀ' : ଚନ୍ଦ୍ରଶେଖର ରଥ ।

''ଧନ ଉଡ଼ାଇ ଫତୁର ହେବା ଏକ ଆର୍ଟ ହୋଇପାରେ, କିନ୍ତୁ ଧନ ସଞ୍ଚି ଧନୀ ଲୋକ ହେବା—ଏକ ଦର୍ଶନ, ଜୀବନ ସମ୍ବନ୍ଧରେ ଏକ ଦୃଷ୍ଟିକୋଣ, ପୁଣି ତାକୁ ଦୈନନ୍ଦିନ ଜୀବନଚର୍ଯ୍ୟାରେ ପ୍ରୟୋଗ କରିବାର ଏକ ସାଧନ—ନାରାୟଣ ମହାପାତ୍ରେ ଏହାର ଏକ ବିଶିଷ୍ଟ ଉଦାହରଣ ।''

'ସୀମାରେଖା' : ସୁରେନ୍ଦ୍ର ମହାନ୍ତି ।

ଏହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହାର ସାଧନରେ ଯେଉଁ ଲେଖକ ଯେତେ ଦକ୍ଷ ସେ ସେତିକି ସଫଳ ।

**(ii) ପ୍ରବାହ :**

କ୍ଷୁଦ୍ରଗଳ୍ପର କଥାଭାଗ ବିସ୍ତୃତ ନହୋଇ ସଂକ୍ଷିପ୍ତ ହୋଇଥାଏ । ଏକମାତ୍ର ଏବଂ ସଂକ୍ଷିପ୍ତ ଆୟତନ ବିଶିଷ୍ଟ କଥାଭାଗ କ୍ଷୁଦ୍ରଗଳ୍ପର ବକ୍ତବ୍ୟକୁ ଶାଣିତ କରେ ଯେମିତି ଲେଖକର ଶୈଳ୍ପିକ ସିଦ୍ଧିକୁ ସାବ୍ୟସ୍ତ ମଧ୍ୟ କରେ ସେମିତି । ଏଣୁ ହିଁ କ୍ଷୁଦ୍ରଗଳ୍ପ ପ୍ରକୃତରେ କ୍ଷୁଦ୍ର ହୁଏ । ମାତ୍ର କ୍ଷୁଦ୍ରଗଳ୍ପର ଇତିହାସରେ ଯେମିତି ବିଭିନ୍ନ ଆକାର ଆୟତନ ବିଶିଷ୍ଟ ରଚନା ଉପଲବ୍ଧ; ଅନୁରୂପଭାବେ କ୍ଷୁଦ୍ରଗଳ୍ପର ବ୍ୟାକରଣ ତା'ର ଆକାର ପ୍ରକାର ସଂପର୍କରେ ନିର୍ଦ୍ଦିଷ୍ଟ ନିୟମ ପ୍ରଦାନରେ ଉଦାସୀନ ।

ପୋ'ଙ୍କ ଦୁଇଘଣ୍ଟା, ୱେଲ୍ସଙ୍କ କୋଡ଼ିଏ ମିନିଟ୍‌ର ଶୃଙ୍ଖଳାକୁ ଏକାବେଳକେ ଅବଜ୍ଞା କରି ୧ ମିନିଟ୍‌ରେ ପଢ଼ିହେଲାଭଳି ମିନିଗପ ବିଶ୍ୱ ସାହିତ୍ୟରେ ଅଛି; ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟରେ ମଧ୍ୟ ଅଛି ।

ତେବେ କ୍ଷୁଦ୍ରଗଳ୍ପର ଆକାର ପ୍ରକାରକୁ ବ୍ୟାପ୍ତି ବା ସଂକ୍ଷିପ୍ତି ଦିଏ ତା'ର କଥାଭାଗର ପ୍ରବାହ । ଏହି ଅଂଶରେ ଯେଉଁ କଥାକାର ଯେତେ ସତର୍କ, ଲକ୍ଷ୍ୟ ନିର୍ଦ୍ଦିଷ୍ଟ, ଶବ୍ଦସମର୍ଥ ଏବଂ ଆକସ୍ମିକତା ପ୍ରଦାନରେ ଯେତେ ଚଟୁଳ ତାଙ୍କର ସୃଷ୍ଟି ସେତିକି ଆକାର ନିୟନ୍ତ୍ରିତ ଅନ୍ୟଥା ଆକାର ଅବ୍ୟବସ୍ଥିତ ହୋଇଥାଏ । ଏହା ସତ୍ତ୍ୱେ କେତେକ ନିର୍ଦ୍ଦିଷ୍ଟ ପ୍ରସଙ୍ଗ, ନୂତନ ଆଭିମୁଖ୍ୟ, ନୂତନ ପରିବେଶ, ସ୍ୱତନ୍ତ୍ର ଚରିତ୍ର ଇତ୍ୟାଦି କ୍ଷେତ୍ରରେ କଥାକାର ସେସବୁର ସ୍ପଷ୍ଟତା ଦେବାପାଇଁ ଅଗତ୍ୟା ସମସ୍ତ ସାମର୍ଥ୍ୟ ସତ୍ତ୍ୱେ ଗଳ୍ପକୁ ଦୀର୍ଘ କରିବସନ୍ତି ।

ପ୍ରବାହ ଅଂଶରେ ରହେ ଘଟଣାର ବିକାଶ, ଚରିତ୍ରର ପ୍ରକାଶ, ଦ୍ୱନ୍ଦ୍ୱ, ଓ ଶୀର୍ଷ । ପ୍ରବାହ ଅଂଶ ହିଁ 'ଉତ୍କଣ୍ଠା' ସୃଷ୍ଟିକରାଏ ଓ ଏକ ବା ଏକାଧିକ ଦ୍ୱନ୍ଦ୍ୱରେ ପାଠକର ପୂର୍ବାନୁମାନ୍‌କୁ ବଳିଷ୍ଠତା ଅଥବା ବିକଳତା ପ୍ରଦାନ କରାଏ । ବଳିଷ୍ଠତା କ୍ଷେତ୍ରରେ ପ୍ରଶାନ୍ତି ଓ ବିକଳତା କ୍ଷେତ୍ରରେ ବିସ୍ମୟ ସୃଷ୍ଟି ହୁଏ । ଉଭୟ କ୍ଷେତ୍ରରେ ପୁଲକ ପାଠକର ପ୍ରାପ୍ତି ହୋଇଥାଏ ।

ଅତଏବ ଗଳ୍ପର 'ପ୍ରବାହ' ଅଂଶ ହେଉଛି ପାଠକର ମସ୍ତିଷ୍କର ବିଚାର ଓ ହୃଦୟର ରସବୋଧକୁ ଏକତ୍ର ଓ ଆଚ୍ଛନ୍ନ କରି ରଖିପାରିବାରେ ସମର୍ଥ ଏକ ବର୍ଣ୍ଣନା ଅଥବା ବ୍ୟଞ୍ଜନାତ୍ମକ ପ୍ରୟାସ । ଏହାର ସଫଳତା ଉପରେ ଗଳ୍ପର ମୂଲ୍ୟ ନିର୍ଭର କରେ । କାରଣ ଏହାହିଁ ପାଠକକୁ ଗଳ୍ପ ଘଟଣାର ସହଯାତ୍ରୀ କରାଇଥାଏ; ଗଳ୍ପଉଦ୍ଦେଶ୍ୟର ସାକ୍ଷାତ ଦେବାପାଇଁ ।

**(iii) ପରିଣତି :**

ଗଳ୍ପର ପରିଣତି ହିଁ ପ୍ରକୃତ ଗଳ୍ପ ହୋଇଥାଏ । କାରଣ ପରିଣତି ହିଁ ଗଳ୍ପ ବକ୍ତବ୍ୟକୁ ନିର୍ଦ୍ଧାରଣ କରିଥାଏ । ଏଣୁ ଗଳ୍ପର ପରିଣତିକୁ ତୀକ୍ଷ୍ଣ, ବ୍ୟଞ୍ଜନାଧର୍ମୀ, ନିଷ୍କର୍ଷଦାୟୀ କରାଯାଇଥାଏ । ପରିଣତି ଆକସ୍ମିକ ହେଲେ ପାଠକ ଅଧିକ ବିସ୍ମିତ ହୁଏ; ଅନାକାଙ୍‌କ୍ଷିତ ହୋଇଥିଲେ ପାଠକକୁ ଅଧିକ ତୃପ୍ତି ଦେଇଥାଏ । ଅନ୍ୟପକ୍ଷରେ ବିଳମ୍ବିତ ଓ ପାଠକ କଳ୍ପନାମତେ ଘଟିଲେ ତାହା ପ୍ରଭାବଶାଳୀ ହୋଇପାରେ ନାହିଁ । ଏଥିପାଇଁ ଗଳ୍ପରେ ପ୍ରାରମ୍ଭ ଭଳି ପରିଣତି କ୍ଷେତ୍ରରେ ମଧ୍ୟ ସତର୍କତା ଲୋଡ଼ାହୁଏ ।

ପରିଣତିର ଗୁରୁତ୍ୱ 'ପ୍ରାରମ୍ଭ' ପାଇଁ ବ୍ୟବହୃତ ସେହି ଇଂରାଜୀ ଉଦ୍ଧୃତିଟିରେ ମଧ୍ୟ ନିହିତ । ତହିଁରେ ସଫଳ ଗଳ୍ପପାଇଁ ଘୋଡ଼ାଦୌଡ଼ ଭଳି 'ଫିନିସ୍' ବା ପରିଣତିର ସୁଦ୍ଧା ଗୁରୁତ୍ୱ ରହିଥିବା କଥା ସୂଚୀତ ।

ଅନେକ କଥାକାର ଅବଶ୍ୟ ପରିଣତିର ସୂଚନା ଦେଇସାରି ମଧ୍ୟ ଦୀର୍ଘପୃଷ୍ଠା ବ୍ୟାପୀ ପାଠକକୁ ଦୋଳାୟିତ ରଖିପାରନ୍ତି । ସେଭଳି ଗାଳ୍ପିକ ପ୍ରତିଭାଶାଳୀ । ତେବେ ପରିଣତିର ଆକସ୍ମିକତା ଓ ତୀକ୍ଷ୍ଣବ୍ୟଞ୍ଜନା ଗଳ୍ପକୁ ରସୋତ୍ତୀର୍ଣ୍ଣ କରିଥାଏ ।

ଗଳ୍ପର ପରିଣତିରେ ତୃପ୍ତି ବା ଅତୃପ୍ତି ଲାଭ ଗଳ୍ପସାଫଲ୍ୟର ପ୍ରମାଣ । ଉଭୟ ତୃପ୍ତିଦାନ ଓ ଅତୃପ୍ତିର ଜ୍ୱାଳା ସୃଷ୍ଟି ମଧ୍ୟ ସଫଳ ଗଳ୍ପର ଲକ୍ଷଣ । ବର୍ଷାଯାପନ କବିତାଂଶର ଏଇ ଉଦ୍ଧୃତିଟି ପ୍ରାୟ ଉଦ୍ଧାର କରାଯାଇଥାଏ-

x x x

ଅନ୍ତରେ ଅତୃପ୍ତି ରବେ
ସାଙ୍ଗକରି ମନେ ହବେ
ହୟେଲନା ଶେଷ । (ରବୀନ୍ଦ୍ରନାଥ)

ପ୍ରାରମ୍ଭ ପରି ପରିଣତି ମଧ୍ୟ ଏକ ପଦରୁ ଆରମ୍ଭକରି ଦୀର୍ଘ ଅନୁଚ୍ଛେଦ ବିଶିଷ୍ଟ ହୋଇପାରେ । ଏଥିରେ ମଧ୍ୟ ପ୍ରଶ୍ନ, ଜିଜ୍ଞାସା, ବିସ୍ମୟ ନିହିତ ଥାଇପାରେ । ଏହା କୌତୂହଳ ମେଣ୍ଟାଇବା ସହିତ କୌତୂହଳ ବର୍ଦ୍ଧିତ ମଧ୍ୟ କରିଥାଇପାରେ ।

ଏଣୁ ଗଳ୍ପପରିଣତି କେବଳ ଗଳ୍ପ ସମାପ୍ତି ନୁହେଁ । ଏହା ଗଳ୍ପର ଚୂଡ଼ାନ୍ତ ପରିପୂର୍ଣ୍ଣତା । ଆରମ୍ଭ-ବିକାଶ ଓ ସମାପ୍ତିର କେବଳ କ୍ରମନୁହେଁ ଏକ ବର୍ତ୍ତୁଳ ସମଗ୍ରତା ହେବା ଉଚିତ । ଜନ୍ କୋର୍‌ନସ୍ କହିବା ଭଳି—ଏକ ସଫଳ ଗଳ୍ପ ଜୀବନର ଟୁକୁଡ଼ାଏ ଆଦୌ ନୁହେଁ, ବରଂ ଏହା ଏକ ରୋଟିମୋଡ଼ା - ଏକ ପୂର୍ଣ୍ଣ (ସ୍ୱୟଂସଂପୂର୍ଣ୍ଣ) ରୋଟିମୋଡ଼ା ।

କେତେକ ସମୟରେ ଗଳ୍ପର ପରିଣତି ଗଳ୍ପର ପ୍ରାରମ୍ଭରୁ ପ୍ରଦାନ କରାଯାଇଥାଏ ବା ଗଳ୍ପଟି ସମଗ୍ରତଃ ଅତୀତ ଉଦ୍ଭାସନ ରୀତିରେ ଲିଖିତ ହୁଏ ।

(ଅତୀତ ଉଦ୍ଭାସନ ଦେଖନ୍ତୁ)

ଗଣେଶ୍ୱର ମିଶ୍ରଙ୍କ 'ଦୋଷୀ', ଗୋପୀନାଥ ମହାନ୍ତିଙ୍କ 'ମୁନ୍‌ସୀ' ଓ ଅଖିଳମୋହନ ପଟ୍ଟନାୟକଙ୍କ 'ଚନ୍ଦ୍ରର ଅଭିଶାପ' ଗଳ୍ପ ଏହି ଧାରାର ।

# ପ୍ରତ୍ୟଙ୍ଗ

କ୍ଷୁଦ୍ରଗଳ୍ପର ଆବୟବୀୟ ଗଠନ ପାଇଁ କେତେକ ଉପାଦାନ ଅବଶ୍ୟ ଜରୁରୀ । ଏହି ଉପାଦାନ ଗୁଡ଼ିକର ଉପଯୋଗ ସାମାନ୍ୟ ପରିମାଣରେ ହେଉପଛକେ ନିଶ୍ଚିତଭାବେ କ୍ଷୁଦ୍ରଗଳ୍ପରେ କରାଯାଇଥାଏ । ପ୍ରତ୍ୟେକ ଉପାଦାନ ଅନିବାର୍ଯ୍ୟ; ଗୁରୁତ୍ୱ ଦୃଷ୍ଟିରୁ କେହି ନ୍ୟୂନ ବା ପ୍ରଧାନ ହୋଇଥାଏ ।

ପ୍ରତ୍ୟେକ ଉପାଦାନର ପୁଣି ବିଭିନ୍ନତା ରହିଛି । ରୀତି, ଉପଯୋଗ ଓ ପ୍ରୟୋଗ ଦୃଷ୍ଟିରୁ ଏକ ନିର୍ଦ୍ଦିଷ୍ଟ ଉପାଦାନର ଅନେକ ପ୍ରକାର ଅଛି । ପୁନଶ୍ଚ ଏକ ଉପାଦାନ ଏକାଧିକ ଉପାଦାନଗର୍ଭିତ ହୋଇଥାଏ ।

ଉପାଦାନ ଗୁଡ଼ିକୁ ନିମ୍ନମତେ ସନ୍ନିକରଣ କରାଯାଇପାରେ—

୧ - କଥାଭାଗ

୨ - ଚରିତ୍ର

୩ - ଭାଷା

୪ - ବାତାବରଣ

## ୧ - କଥାଭାଗ

କ୍ଷୁଦ୍ରଗଳ୍ପ ଏକ କାହାଣୀଧର୍ମୀ କଳା । ଅର୍ଥାତ ଏହା ଘଟିଯାଇଥିବା, ଘଟିଚାଲିଥିବା, ଓ ଘଟିବାକୁ ଥିବା କେତେକ ପ୍ରସଙ୍ଗର କ୍ରମିକ ବିବରଣୀ ପ୍ରଦାନକରେ । ଗଳ୍ପରେ କାଳର ଅନୁକ୍ରମ ରହିପାରେ କିନ୍ତୁ ସର୍ବଦା ଏହା ଅତୀତକାଳରେ ହିଁ ଘଟେ । କଥାକାର ପାଠକକୁ ଘଟିସାରିଥିବା କିମ୍ବା ଘଟିଚାଲିଥିବା ଘଟଣା ବର୍ଣ୍ଣନା କରି କହିଥାନ୍ତି । ସେହି ବର୍ଣ୍ଣନାଂଶ ହେଉଛି ଗଳ୍ପର କଥାଭାଗ ବା କାହାଣୀ ।

ସାଧାରଣତଃ ଗଳ୍ପର ଏଇ ବର୍ଣ୍ଣନାଂଶକୁ 'କାହାଣୀ' କୁହାଯାଏ; ପୁଣି ଗଳ୍ପର ଆଦିମ ରୂପକୁ 'କାହାଣୀ' କୁହାଯାଏ । ଏଣୁ କେହିକେହି କ୍ଷୁଦ୍ରଗଳ୍ପର ରମ୍ୟତା, ଲଘୁତା ଓ ଗ୍ରାମ୍ୟତା ପୁଣି କାଳଦୀର୍ଘ ପ୍ରସଙ୍ଗଯୁକ୍ତତା ତାହାର କାହାଣୀତତ୍ତ୍ୱ ବୋଲି ବୁଝିଥାନ୍ତି । ଏହାର ଅଭାବରେ ଗମ୍ଭୀର, ଦାର୍ଶନିକ, ମନସ୍ତାତ୍ତ୍ୱିକ ପ୍ରସଙ୍ଗ ଅଙ୍ଗୀଭୂତ କରି ଏକ ସଂକ୍ଷିପ୍ତ କାଳ ବା ଘଟଣାଶ୍ରିତ କଥାନକକୁ କାହାଣୀହୀନତା ବୋଲି କହିଥାନ୍ତି । କାହାଣୀ

ଭଳି ଆଦ୍ୟ-ମଧ୍ୟ-ଅନ୍ତ ସମନ୍ୱିତ ଗଳ୍ପପ୍ରବାହ ଏବଂ କାହାଣୀହୀନ ମନେହେଉଥିବା ଗଳ୍ପପ୍ରସଙ୍ଗ ଏ ଉଭୟର ପ୍ରକୃତ ପରିଭାଷା ହେଉଛି 'କଥାଭାଗ'। କୌଣସି କୌଣସି ଗଳ୍ପର କଥାଭାଗ କାହାଣୀ ସୁଲଭ ପାରମ୍ପରିକ ଏବଂ କୌଣସି କୌଣସି ଗଳ୍ପର କଥାଭାଗ କାହାଣୀହୀନ ପ୍ରତେ ହେଉଥିବା ବର୍ଣ୍ଣନା ବା ଆଖ୍ୟାନ।

ଉଦାହରଣତଃ 'ରେବତୀ' ଗଳ୍ପର କଥାଭାଗ କାହାଣୀଧର୍ମୀ ଓ 'ପେଟେଣ୍ଟ ମେଡ଼ିସିନ୍' ର କଥାଭାଗ ଘଟଣାଧର୍ମୀ; ମାତ୍ର ଉଭୟ ସଫଳ ଗଳ୍ପ। ଏଣୁ ଗଳ୍ପର ପ୍ରାରମ୍ଭ ଓ ପରିଣତିର ମଝିରେ ଯେଉଁ ପ୍ରବାହ ଅଂଶ ତାହାକୁ 'କଥାଭାଗ' କହିବା ଯଥାର୍ଥ।

ପାଠକକୁ ଗଳ୍ପର ବକ୍ତବ୍ୟ ପର୍ଯ୍ୟନ୍ତ ସମ୍ମୋହିତ କରି ନେଇଯିବାର ଏକ ଯୋଜନାବଦ୍ଧ ପ୍ରୟାସ ହେଉଛି ତାହାର କଥାଭାଗ। ଯେଣୁ ପାଠକକୁ ମନ୍ତ୍ରମୁଗ୍ଧ କରିରଖିବା ବା ପ୍ରଭାବିତ କରି ରଖିବା ହେଉଛି କଥାଭାଗର ଉଦ୍ଦେଶ୍ୟ, ତେଣୁ ଏଥିରେ ବିଭିନ୍ନ କୌଶଳ ପ୍ରଯୁକ୍ତ। କାରଣ କଥାଭାଗ ହେଉଛି ଘଟଣାବଳୀର ସଂସ୍ଥାନ।

କଥାଭାଗରେ ପ୍ରଯୁକ୍ତ ବିଭିନ୍ନ କୌଶଳ ବା ଧାରା ନିମ୍ନମତେ।

**(i) ପ୍ରତ୍ୟକ୍ଷ ବର୍ଣ୍ଣନା :**

ଲେଖକ ଏକ ଅପ୍ରଭାବିତ ଦୂରତ୍ୱରେ ଥାଇ, ଘଟଣା-ଚରିତ୍ର ସହିତ ଆଦୌ ସଂପର୍କିତ ନହୋଇ ତଟସ୍ଥ ଦ୍ରଷ୍ଟା ସୁଲଭ ଆଖିଦେଖା ଦୃଶ୍ୟର ଧାରାବିବରଣୀ ଦେଇଚାଲୁଥିବା ଏହି ରୀତିର ଅନ୍ତର୍ଭୁକ୍ତ। କଥାକାର ଏହି ବର୍ଣ୍ଣନାରେ କିଛି ଗୋପନ ରଖନ୍ତି ନାହିଁ। ଏପରିକି ସେ ଚରିତ୍ରର ମନୋଭାବ ମଧ୍ୟ ଜାଣିପାରନ୍ତି। ସେ ପାଲଟି ଯାନ୍ତି ସର୍ବଦ୍ରଷ୍ଟା। ଚରିତ୍ର-ଘଟଣାକୁ ସେ ପ୍ରଭାବିତ କରନ୍ତିନାହିଁ କିନ୍ତୁ ସବୁ ଚରିତ୍ର ଭିତରେ ସେ ବ୍ୟାପି ରହିଥାନ୍ତି। ଏଭଳି ରୀତିରେ ସବୁ ଚରିତ୍ର ପାଇଁ 'ସେ' ସର୍ବନାମ ବ୍ୟବହାର ହୋଇଥାଏ। ପାଠକ ଲେଖକଙ୍କ ବର୍ଣ୍ଣନା ଅନୁସରଣରେ ସ୍ଥାନ-କାଳ-ପାତ୍ରକୁ ଚିହ୍ନେ ଓ ବକ୍ତବ୍ୟକୁ ଘେନେ। ଏହା ବହୁ ପ୍ରଚଳିତ ଏବଂ ସାଧାରଣ ରୀତି; ଅଧିକାଂଶ ଗଳ୍ପ ଏହି ରୀତିରେ ରଚିତ ହୁଏ। ଯେପରି 'ରେବତୀ', 'ରାଣ୍ଡିପୁଅ ଅନନ୍ତା', 'ବୁଢ଼ା ଶଙ୍ଖାରି', 'ମାଂସର ବିଳାପ' ପ୍ରଭୃତି।

**(ii) ଆତ୍ମ ସଂଳାପଧର୍ମୀ ବର୍ଣ୍ଣନା :**

ଲେଖକ ମୁଖ୍ୟ ଚରିତ୍ର ସ୍ଥାନରେ ନିଜକୁ ଅବସ୍ଥାପିତ କରି ଚରିତ୍ରର ଚେତନା ଦୃଷ୍ଟିରୁ କଥାଟିକୁ ବର୍ଣ୍ଣନା କରିଥାନ୍ତି। ପ୍ରଥମ ପୁରୁଷ ଏକବଚନରେ ସେ କଥାଟି ପରିବେଷଣ କରନ୍ତି। ସମଗ୍ର ବର୍ଣ୍ଣନାଟି 'ମୁଁ' ଭାବରେ ଲେଖକ ବା ଲେଖକ ଆଶ୍ରୟ କରିଥିବା ମୁଖ୍ୟ ଚରିତ୍ରଟି ଦ୍ୱାରା ପ୍ରଦାନ କରାଯାଇଥାଏ। ଏଭଳି ରୀତିରେ 'ମୁଁ' ସର୍ବନାମଧାରୀ ଚରିତ୍ର ଲେଖକଙ୍କ ଅଧିକ ପ୍ରିୟତା ବା ପକ୍ଷ ସମର୍ଥନ ପାଇଥାଏ। ଏଣୁ

ଏଭଳି ରୀତିରେ ଗଳ୍ପ ମୁଖ୍ୟ ଚରିତ୍ରର ଅଥବା ଲେଖକଙ୍କ ନିଜସ୍ୱ ବକ୍ତବ୍ୟ ବାଢୁଥିବା ଭଳି ଜଣାଯାଏ । ପାଠକ ମଧ୍ୟ 'ମୁଁ'ର ପ୍ରତିରୂପ ଚରିତ୍ରଟି ଭିତରେ ଆପଣାକୁ ଅବସ୍ଥାପିତ କରିଦିଏ । ଫଳରେ ଗଳ୍ପ ଅଧିକ ପାଠକଏକାତ୍ମତା ପାଏ । ଏହି ରୀତି ଏକ ଆଧୁନିକ ରୀତି ।

ଏହାଦ୍ୱାରା ଲେଖକର ବିଷୟ ପ୍ରକାଶରେ ସ୍ପଷ୍ଟତା ଆସିବା ସହିତ ବ୍ୟକ୍ତିଗତ ଅନୁଭୂତିକୁ ଗଳ୍ପରୂପ ଦେବାର ସୁଯୋଗ ସୃଷ୍ଟି ହୋଇଛି ।

'ସେ ଓ ମୁଁ'—ସୁରେନ୍ଦ୍ର ମହାନ୍ତି, 'ଭିନ୍ନ ପାଉଁଶ'—କିଶୋରୀ ଚରଣ ଦାସ, 'ରାଗତୋଡ଼ି'—ରବି ପଟ୍ଟନାୟକ, 'ବାଘସବାର'—ଚନ୍ଦ୍ରଶେଖର ରଥ, 'ଅଭିଶପ୍ତ ଗନ୍ଧର୍ବ'—ମହାପାତ୍ର ନୀଳମଣି ସାହୁ ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ ।

**(iii) ସଂଳାପଧର୍ମିତା :**

କଥାଭାଗ ଏକାଧିକ ଚରିତ୍ରଙ୍କ ସଂଳାପ ଆଦାନ ପ୍ରଦାନ ଭିତ୍ତିରେ ଗଠିତ ହୋଇପାରେ । ଏଥିରେ ବର୍ଣ୍ଣନାକାରୀ ଲେଖକଙ୍କ ଭୂମିକା ନେପଥ୍ୟରେ ରହେ । ସେ କୌଣସି ଘଟଣା ପରିପ୍ରେକ୍ଷୀରେ ଚରିତ୍ରଙ୍କୁ ସମାବିଷ୍ଟ କରାଇ ସେମାନଙ୍କ କଥୋପକଥନ ଆରମ୍ଭ କରାଇଦିଅନ୍ତି । ତେଣିକି ସେମାନଙ୍କ କଥାବାର୍ତ୍ତାରୁ ପାଠକକୁ ଗଳ୍ପର ବକ୍ତବ୍ୟ ଉପଲବ୍ଧ ହୁଏ । କୌଣସି କୌଣସି କ୍ଷେତ୍ରରେ ସଂଳାପ ପ୍ରୟୋଗ ଆମୂଳାନ୍ତ ନହୋଇ କେବଳ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗରେ କରାଯାଇଥାଏ; ଅବଶିଷ୍ଟାଂଶ ବର୍ଣ୍ଣନା ଜରିଆରେ ସ୍ପଷ୍ଟ କରାଯାଇଥାଏ ।

ଏଭଳି ରୀତିରେ ଲେଖକର ଦାୟିତ୍ୱ ଊଣା ହେବା ସହ, ଶବ୍ଦସାଶ୍ରୟ ଘଟିଥାଏ । ବେଳେବେଳେ ସଂଳାପରୁ ନୂତନ ଦର୍ଶନ, ନୂତନ ଅବବୋଧ ସ୍ଫୁରିତ ହୋଇଉଠେ କିମ୍ବା ଗଳ୍ପ ବକ୍ତବ୍ୟର ମଞ୍ଜ ଧରାପଡ଼େ । ଚରିତ୍ରର ଚାରିତ୍ରିକତା ମଧ୍ୟ ଉକୁଟି ଉଠେ ।

ଏଥିରେ ପୁଣି ଚରିତ୍ର ଭେଦରେ ଭାଷାର-ଭଂଗୀର ଭିନ୍ନତା ସୃଷ୍ଟି ହେଉଥିବାରୁ ବର୍ଣ୍ଣନାକାରୀ ଲେଖକ ପ୍ରଯୁକ୍ତ ଭାଷାର ଏକଟଣାରୁ ପାଠକ ରିହାତି ପାଏ ।

'ଅଣସର'—ରବି ପଟ୍ଟନାୟକ, 'ଉତ୍ତର ପୁରୁଷ'—ଚନ୍ଦ୍ରଶେଖର ରଥ, 'ବାରଣ୍ଡାରେ ବିପ୍ଳବ'—ରଜନୀକାନ୍ତ ଦାସ ଏବଂ 'ସେମାନଙ୍କ କଥା'—ଅଚ୍ୟୁତାନନ୍ଦ ପତି ପ୍ରଭୃତି ଉଲ୍ଲେଖନୀୟ ।

**(iv) ଅତୀତ ଉଦ୍ଭାସନ :**

କଥାଭାଗର ଅଗ୍ରଗତି ସହିତ ବିକଶି ଉଠୁଥିବା ଚରିତ୍ରର ଅତୀତକଥା ଜଣାଇବା ଜରୁରୀ ହୋଇଥିଲେ ଏହି ରୀତି ଅନୁସୃତ ହୁଏ । ସେଭଳି ସ୍ଥଳେ ଅସଲ କଥାଭାଗକୁ ଠାଏ ସ୍ଥିର ରଖିଦିଆଯାଏ ଯେଉଁଠି ଚରିତ୍ରଟି ତା ଅତୀତ କଥା ସ୍ମରଣ କରିବାକୁ ସୁଯୋଗଟିଏ ସୃଷ୍ଟି ହୋଇଥିବ । ଯଥା—ସୁନ୍ଦରୀଟିଏ ଦେଖି ବିପରୀତ ଚରିତ୍ର ତାର

ମୃତାପତ୍ନୀ କଥା ସ୍ମରଣ କରିବସିବା । ବିରାଡ଼ି ଶାବକଟିଏ ଦେଖି ପୁତ୍ରହରା ଜନନୀ ମୃତ ପୁତ୍ରର ସ୍ମରଣ କରିବା ।

ସ୍ମରଣ ପ୍ରକ୍ରିୟାଟି ସଂକ୍ଷିପ୍ତ ବା ଦୀର୍ଘ ହୋଇପାରେ । ଅତି ସଂକ୍ଷିପ୍ତ ହେଲେ ସ୍ମରଣ ବା ସ୍ମୃତ୍ୟୁଦୟ କୁହାଯାଇଥାଏ । ସାମାନ୍ୟ ଦୀର୍ଘରୁ ଦୀର୍ଘତମ କାଳଯାଏ ସ୍ମରଣ ପ୍ରକ୍ରିୟାଟି ଚାଲୁ ରହିଲେ ଏବଂ ତାର ଚିତ୍ରାତ୍ମକ ପ୍ରକାଶ ଅସଲ କଥାଭାଗର ଅଂଶବିଶେଷ ପାଲଟି ଯାଇପାରୁଥିଲେ ତାହାକୁ ଅତୀତ ଉଦ୍ଭାସନ ବିଶିଷ୍ଟ କଥାଭାଗ କୁହାଯାଏ ।

ବେଳେବେଳେ ସମୁଦାୟ କଥାଭାଗ ଅତୀତ ଉଦ୍ଭାସନ ରୀତିରେ ଉପସ୍ଥାପିତ ହୋଇଥାଏ ଏଭଳି କ୍ଷେତ୍ରରେ ପରିଣତି ହିଁ ହୋଇଥାଏ ପ୍ରାରମ୍ଭ; ପ୍ରବାହ ହୋଇଥାଏ ଅତୀତକଥା ଏବଂ ପ୍ରାରମ୍ଭ ଘଟିଥାଏ ପରିଣତିଠାରେ ।

ଅନେକ ସମୟରେ ଏକ କଥାଭାଗର ପ୍ରବାହ ଖଣ୍ଡ ଖଣ୍ଡ କେତୋଟି ସ୍ମୃତିକଥା ଦ୍ୱାରା ଗଠିତ ହୋଇଥାଏ । ଏଭଳି ସ୍ଥଳେ ବର୍ଣ୍ଣନାକାରୀ ଲେଖକ କେବଳ ସଂଯୋଜକର ଭୂମିକାରେ ରହି ପ୍ରଧାନ ପ୍ରଧାନ କେତୋଟି ସ୍ମୃତି ଉଦ୍ରେକକାରୀ ବସ୍ତୁ/ଘଟଣା/ବ୍ୟକ୍ତି ଚରିତ୍ରଟିକୁ ଭେଟାଇ ଦେଇଥାନ୍ତି । ତେଣିକି ନାୟକର ଭାବନା ବା ଚିନ୍ତାରୁ କଥାଭାଗଟି ଗଢ଼ିଉଠେ ।

'ବିଲେଇ'—ମନୋଜ ଦାସ, 'ତକ୍ଷକ'—ରବି ପଟ୍ଟନାୟକ ଓ 'ତିନିକାଳ'—ଗୋପୀନାଥ ମହାନ୍ତି ପ୍ରଭୃତି ଗଳ୍ପ ଉଦ୍ଧାରଯୋଗ୍ୟ ।

(v) ଭବିଷ୍ୟତ ବର୍ଣ୍ଣନା :

ସାଧାରଣତଃ କଥାଭାଗଟି ଅତୀତ କାଳରେ ପରିବେଷିତ ହେଲେ ହେଁ ତତ୍କାଳ ଘଟିତ ହିଁ ହୋଇଥାଏ । ଗଳ୍ପରେ ଉପଯୋଗ ସମୟ ଯେତେ ଦୀର୍ଘ ହେଲେ ସୁଦ୍ଧା ତାହା ଦୂରଅତୀତକୁ ସ୍ପର୍ଶ କରେନାହିଁ କିମ୍ବା ଗଳ୍ପ ଚରିତ୍ର ଯେତେ ଯାହା ଘଟାଇଲେ ସୁଦ୍ଧା ତାହା ବର୍ତ୍ତମାନରେ ପହଞ୍ଚେ ନାହିଁ ।

ତଥାପି ଗଳ୍ପରେ ଭବିଷ୍ୟତ କଥା ଅଂଶୀଭୂତ ହୋଇଥାଏ । ଚରିତ୍ରର ବ୍ୟକ୍ତିଗତ ଚିନ୍ତାରେ, ଦୁଇ ଚରିତ୍ରର ସଂଳାପରେ କିମ୍ବା ଲେଖକଙ୍କ ବର୍ଣ୍ଣନାରେ ଭବିଷ୍ୟତର ଚିତ୍ର ପ୍ରଦତ୍ତହୁଏ । ଏହାଫଳରେ କଥାଭାଗ ବଳିଷ୍ଠ ହୋଇଥାଏ ଏବଂ ବ୍ୟାପ୍ତ ମଧ୍ୟ ହୋଇଥାଏ । କିନ୍ତୁ ପରିଣତି ପୂର୍ବରୁ ଏହି ଚିନ୍ତନ ଓ କଳ୍ପନା ଜନିତ ଭବିଷ୍ୟତ ଯାତ୍ରାରୁ ଓହରି ଆସିବାକୁ ହୁଏ । ମୂଳ କଥାଭାଗର ଭବିଷ୍ୟତରେ ଥାଇ ମଧ୍ୟ ଏହା ମୂଳକଥାଭାଗର ଅଂଶବିଶେଷ ପାଲଟିଯାଏ ।

'ପ୍ରୟୋଜନୀୟ ହତ୍ୟାକାଣ୍ଡ ପାଇଁ ଷଡ଼ଯନ୍ତ୍ର'—କହ୍ନେଇଲାଲ ଦାସ ।

**(vi) ପ୍ରାମାଣିକ ବସ୍ତୁ ଉପସ୍ଥାପନ :**

କଥାଭାଗ କେବଳ ବର୍ଣ୍ଣନା, ସଂଳାପ, ଆତ୍ମସଂଳାପ, ଅତୀତ ଚିନ୍ତା ଏବଂ ଭବିଷ୍ୟ ଭାବନାରେ ଗଠିତ ହୋଇଥାଏ ନୁହେଁ; ବେଳେବେଳେ ତହିଁରେ ଚରିତ୍ରର ଡ଼ାଏରୀ, ଚିଠିପତ୍ର, ଉଇଲ୍, ସମ୍ବାଦପତ୍ରର ଉଦ୍ଧରଣ, ପତ୍ରିକାର ପାଠୋଦ୍ଧାର, ଦଲିଲ୍, ଦସ୍ତାବିଜ୍, ଆଦେଶନାମା, ପ୍ରଶଂସାପତ୍ର ଇତ୍ୟାଦି ପ୍ରାମାଣିକ ବସ୍ତୁ ଗର୍ଭିତ ହୋଇଥାଏ ।

ସମୟ ସମୟରେ ସମୁଦାୟ କଥାଭାଗ ଏକ ଦିନଲିପି ଗୁଚ୍ଛ, ପତ୍ରଗୁଚ୍ଛ, ଉଇଲ୍ ବା ଇଚ୍ଛାପତ୍ରଟିଏ, କେତୋଟି ସମ୍ବାଦପତ୍ର କଟିଂ, ଗୋଟିଏ ଦଲିଲ ବା ଗୋଟିଏ ସରକାରୀ ଆଦେଶନାମା ମଧ୍ୟ ହୋଇଥାଏ । ପ୍ରାରମ୍ଭ ଓ ପରିଣତିରେ ଲେଖକ ସାମାନ୍ୟ ସୂଚନା ଦେଇ ବ୍ୟବହୃତ ସେଇ ପ୍ରାମାଣିକ ବସ୍ତୁ ଜରିଆରେ କେବଳ ସମଗ୍ର ଗଳ୍ପଟି ନିର୍ମାଣ କରିଥାନ୍ତି ।

'ବିଶେଷ ସମ୍ବାଦ', କହ୍ନେଇଲାଲ ଦାସ, 'କସ୍ତୁରୀ ମୃଗ'—ରାଧାବିନୋଦ ନାୟକ, 'ଏ ଚିଠି ପାଇବେ ଲିଉ ସାନ୍ ଚି'—ବ୍ରହ୍ମାନନ୍ଦ ପଣ୍ଡା ପ୍ରଭୃତି ଗଳ୍ପ ଦ୍ରଷ୍ଟବ୍ୟ ।

ସମୟ ସମୟରେ କଥାଭାଗର ବଳିଷ୍ଠତା ଓ ବିଶ୍ୱସନୀୟତା ପାଇଁ ଏସବୁ ପ୍ରାମାଣିକ ବସ୍ତୁ ଉପଯୋଗ ହୋଇଥାଏ । କେବଳ ବସ୍ତୁ ଉପଯୋଗ ଯଥେଷ୍ଟ ନୁହେଁ ତାହା ପ୍ରାମାଣିକ ହେବାପାଇଁ ତାହାର ସମସ୍ତ ରୀତି ଠିକ ଅନୁସୃତ ହୋଇଥିବା ଆବଶ୍ୟକ ।

ଉଦାହରଣତଃ ପତ୍ର ବ୍ୟବହାର । ଯଦି ପତ୍ର ଉଦ୍ଧାର କଲାବେଳେ ତହିଁରେ ପ୍ରେରଣସ୍ଥାନ - ତାରିଖ ଉଲ୍ଲେଖ ନରହେ, ସମ୍ବୋଧନ ଓ ସମ୍ଭାଷଣ ଯଥାଯଥ ନରହେ କିମ୍ବା ପତ୍ରାନ୍ତରେ ପ୍ରେରକର ନାମ ଏବଂ ପ୍ରାପକର ଠିକଣା ନଥାଏ ତେବେ ପତ୍ରସ୍ଥ ବକ୍ତବ୍ୟ ଗଳ୍ପ ପାଇଁ ଯେତେ ଜରୁରୀ ହେଉ ବା ପତ୍ରଟି ଯେତେ ସୁଲିଖିତ ହୋଇଥାଉ ତାହା ପ୍ରାମାଣିକତା ହରାଏ ।

'ବନ୍ଧୁଙ୍କ ନିକଟକୁ ପତ୍ର' -(ପ୍ରଫୁଲ୍ଲ କୁମାର ତ୍ରିପାଠୀ)ଏହି ଧାରାର ସଫଳ ଗଳ୍ପ ।

**(vii) ଦ୍ୱନ୍ଦ୍ୱ :**

ଦ୍ୱନ୍ଦ୍ୱକୁ କେହି କେହି 'ଗଳ୍ପପ୍ରାଣ' କହିଥାନ୍ତି । କାରଣ ଏହା ଗଳ୍ପବକ୍ତବ୍ୟ ପ୍ରତି ଚରିତ୍ର ଓ ଘଟଣାର ପ୍ରବାହକୁ ଏକ ନିୟନ୍ତ୍ରଣ ଦେଇ ପରିଣତିମୁଖୀ କରାଇଥାଏ । ଏଣୁ ମୋ ମତରେ ଦ୍ୱନ୍ଦ୍ୱକୁ ଗଳ୍ପର ପ୍ରାଣ କହିବା ଅପେକ୍ଷା ଗଳ୍ପର ବତୀଘର କହିବା ଯଥାର୍ଥ ହେବ ।

ଏହି ଦ୍ୱନ୍ଦ୍ୱଟି କ'ଣ ?

ଦ୍ୱନ୍ଦ୍ୱର କୌଣସି ନିର୍ଦ୍ଦିଷ୍ଟ ରୂପରେଖ ନାହିଁ । ଯେତେବେଳେ ଗଳ୍ପ ପ୍ରବାହ ଘଟଣା, ଚରିତ୍ର, ଚେତନା, ଦର୍ଶନ ଏପରିକି ପରିବେଶ କିମ୍ବା ବାତାବରଣ ଦ୍ୱାରା ଅଗ୍ରଗତି

ପଥରେ ବାଧା ପାଏ ଓ ପଥ ପରିବର୍ତ୍ତନ କରିବାକୁ ବାଧ୍ୟହୁଏ ତାହା ହୁଏ ଗଳ୍ପର 'ଦ୍ୱନ୍ଦ୍ୱ' ।

ଘଟଣା ଜନିତ ହେଲେ ଘାଟଣିକ, ଚରିତ୍ର ଜନିତ ହେଲେ ଚାରିତ୍ରିକ ... ଦ୍ୱନ୍ଦ୍ୱ କୁହାଯାଏ । କଥା ଚରିତ୍ର ବା କଥାଘଟଣା ସେଇ ଦ୍ୱନ୍ଦ୍ୱକୁ ଅତିକ୍ରମ କିମ୍ବା ଅବହେଳା କରିଗଲେ ଗଳ୍ପ ପୁଣି ପ୍ରବାହପଥରେ ପ୍ରଲମ୍ବିତ ହୁଏ । ପ୍ରଭାବିତ ହେଲେ ଗଳ୍ପ ପରିଣତି ଦିଗକୁ ଆଗେଇଯାଏ । ଏଣୁ ଗଳ୍ପକୁ ସାଧାରଣତଃ ଯେଉଁ ତ୍ରିକୋଣାକାରରେ ଅଙ୍କନ କରାଯାଏ ତାହାର ଶୀର୍ଷବିନ୍ଦୁ ମଧ୍ୟ ଏକ ଦ୍ୱନ୍ଦ୍ୱ ।

ଯେଉଁ ଗଳ୍ପରେ ଏକାଧିକ ଦ୍ୱନ୍ଦ୍ୱ ଥାଏ ଅର୍ଥାତ ଏକାଧିକ ଅଳ୍ପଶକ୍ତି ସଂପନ୍ନ ଦ୍ୱନ୍ଦ୍ୱ-ଯାହା ଚରିତ୍ର ଦ୍ୱାରା ଅତିକ୍ରମ୍ୟ—ତାହା ଦୀର୍ଘ ଗଳ୍ପ ବା ଉପନ୍ୟାସିକା ସୃଷ୍ଟିକରାଏ । ସେଭଳି ପ୍ରତିକ୍ରିୟା ନହେଲେ ଗଳ୍ପଟି ଯଦି ସଂକ୍ଷିପ୍ତ ଆକାର ହୋଇସୁଦ୍ଧା ଉପରୋକ୍ତ ଗୁଣ ବହନ କରେ ତେବେ ଗଳ୍ପଟି ନିଶ୍ଚୟ ରହସ୍ୟ-ରୋମାଞ୍ଚ ଧର୍ମୀ । ଏଭଳି ଧାରା ଯୁଦ୍ଧ ଗଳ୍ପ, ପ୍ରେମଗଳ୍ପ ଓ ଗୁଇନ୍ଦାଗଳ୍ପ କ୍ଷେତ୍ରରେ ପରିଲକ୍ଷିତ ହୁଏ ।

ଦ୍ୱନ୍ଦ୍ୱ ଯେ ସବୁବେଳେ ଗଳ୍ପର ପ୍ରବାହ ପଥରେ ଉଦିତ ହୁଏ ତାହା ମଧ୍ୟ ନୁହେଁ । ବେଳେବେଳେ ଏହା ଗଳ୍ପ ଆଦ୍ୟରେ ଏପରିକି ଗଳ୍ପ ପ୍ରାନ୍ତରେ ସୁଦ୍ଧା ରହିପାରେ । ଆଦ୍ୟରେ ରହିଲେ ସମୁଦାୟ ଗଳ୍ପ ଅତୀତ ଉଦ୍ଭାସନ ରୀତିରେ ବ୍ୟକ୍ତ ହୁଏ; ପ୍ରାନ୍ତରେ ରହିଲେ ବର୍ଣ୍ଣନାରେ ଗଳ୍ପ ରଚିତ ହୁଏ । କେତେକ ସମୟରେ ଗଳ୍ପ ଦ୍ୱନ୍ଦ୍ୱରେ ହିଁ ଶେଷ ହୁଏ କିମ୍ବା ଦ୍ୱନ୍ଦ୍ୱ ଉନ୍ମୋଚନ ହେବା ମାତ୍ରକେ ଶେଷହୁଏ ।

## ୨-ଚରିତ୍ର :

କଥାସାହିତ୍ୟରେ ଅଂଶୀଭୂତ ହୋଇ ତାହାକୁ ପ୍ରବାହ ଦେଉଥିବା ବ୍ୟକ୍ତି, ପ୍ରାଣୀ ବସ୍ତୁ ଏପରିକି ସ୍ଥାନ, ଘଟଣା ଓ ସମୟ ମଧ୍ୟ କଥା-ଚରିତ୍ର ଭାବେ ପରିଚିତ । ତେବେ ଚରିତ୍ର କହିଲେ ଆମେ କଥାସାହିତ୍ୟରେ ବ୍ୟବହୃତ ମଣିଷମାନଙ୍କୁ ବୁଝୁ ଯାହାର ଜୀବନକଥା, ଅନୁଭୂତି, ଚିନ୍ତନ ଓ ବକ୍ତବ୍ୟ ନେଇ କଥା ଗଢ଼ିଉଠିଥାଏ ।

ଚରିତ୍ର ପାଇଁ ଏକ ନାମ, ଧାମ, ଠିକଣା ଦିଆଯାଇଥାଏ କିମ୍ବା କେତେକ ସମୟରେ ଜଣେ ସତମଣିଷ ଓ ଗୋଟିଏ ସତ ଘଟଣାକୁ ପରିବର୍ତ୍ତିତ ନାମଧାମରେ କଥା ପରିସରରେ ବ୍ୟବହାର କରିଦିଆଯାଏ । ତେବେ ଚରିତ୍ର ହେଉଛି କଥାସାହିତ୍ୟରେ ଚଳପ୍ରଚଳ ହେଉଥିବା ଗୋଟିଏ ଗୋଟିଏ ଜୀବନସତ୍ତା । ସେ ସେହିଭଳି ଅନେକଙ୍କର ପ୍ରତିନିଧି ହୋଇଥାଏ କିମ୍ବା ଏକାବେଳକେ ଅନନ୍ୟ ମଧ୍ୟ ହୋଇଥାଏ । ବସ୍ତୁତଃ ଚରିତ୍ର ହିଁ ସାହିତ୍ୟକୁ ଜୀବନଧର୍ମୀ ଓ ବାସ୍ତବାୟିତ କରିଥାଏ ।

କଥାକାର ଆପଣା ବକ୍ତବ୍ୟ ବାଢ଼ିବାକୁ ଯେଉଁ ମୁଖପାତ୍ରଟିର ସହାୟତା ନିଏ ତାହା ହେଲା ଚରିତ୍ର । ଚରିତ୍ର କଥାକାରଙ୍କ ପାଇଁ କଥାକହେ, କାମକରେ ଓ ପାଠକଙ୍କୁ

କଥାକାରଙ୍କ ଉଦ୍ଦେଶ୍ୟ ଜଣାଏ । ଅନ୍ୟକଥାରେ ଚରିତ୍ର ଯାହାକରେ ଓ କହେ ତାହାହୁଏ କଥା ଏବଂ ଯାହା ଚରିତ୍ରକାର୍ଯ୍ୟର ପରିଣତି ହୁଏ ତାହା ହୁଏ କଥା-ଅଭିପ୍ରାୟ । ମୋଟଉପରେ କଥାପରିସରରେ ଚଳପ୍ରଚଳ ହେଉଥିବା ଏବଂ ନିଜର ଭୂମିକା ରଖୁଥିବା ସମସ୍ତ ଜୀବନ୍ତସତ୍ତା ଜଣେଜଣେ କଥାଚରିତ୍ର ।

କୌଣସି କଥାସାହିତ୍ୟରେ, ବିଶେଷକରି କ୍ଷୁଦ୍ରଗଳ୍ପରେ ଚରିତ୍ର ସମାବେଶର ପ୍ରଯୋଜନୀୟତା ଯେତେ ଗୁରୁତ୍ୱ ରଖେ ଚରିତ୍ରର ସଂଖ୍ୟା ସଂପର୍କରେ ସେତେ ସ୍ୱାଧୀନତା ଥାଏ ନାହିଁ । ସଂଖ୍ୟା ଦୃଷ୍ଟିରୁ କ୍ଷୁଦ୍ରଗଳ୍ପରେ ଚରିତ୍ରର ସଂଯୋଜନ ବେଶ୍ ସ୍ୱଳ୍ପ ହେବା ଉଚିତ । ଅନ୍ୟଥା ପ୍ରତି ଚରିତ୍ରପ୍ରତି ସାମାନ୍ୟ ଦୃଷ୍ଟି ଦେବାକୁ ଯାଇ ଗଳ୍ପ ଅଯଥା ସ୍ଫୀତ ଏବଂ କେନ୍ଦ୍ରଚ୍ୟୁତ ହୋଇପଡ଼ିବାର ଆଶଙ୍କା ରହେ । ତଦ୍ୱାରା କ୍ଷୁଦ୍ରଗଳ୍ପର ମୁଖ୍ୟଚରିତ୍ରର ପ୍ରାଧାନ୍ୟ କ୍ଷୁର୍ଣ୍ଣହେବା ଏବଂ ପ୍ରକାଶ ବିଷର୍ଣ୍ଣ ହେବାର ଆଶଙ୍କା ବଳବତ୍ତର ହୋଇଉଠେ । ଏଣୁ କ୍ଷୁଦ୍ରଗଳ୍ପରେ ବହୁଚରିତ୍ର ସମାବେଶ ବର୍ଜନୀୟ ହୋଇଥାଏ ଏବଂ ସ୍ୱଳ୍ପସଂଖ୍ୟକ ବେଳେବେଳେ ଏକମାତ୍ର ଚରିତ୍ର ବ୍ୟବହୃତ ହୋଇଥାଏ । ଏକମାତ୍ର ଚରିତ୍ରଟିର କ୍ରିୟାକଳାପ କିମ୍ବା କେବଳ ମନୋଭାବ ମଧ୍ୟ ଗଳ୍ପଗଠନ କରିପାରେ । ତେବେ ଦୁଇ ତିନୋଟି ଚରିତ୍ର କ୍ଷୁଦ୍ରଗଳ୍ପ ପାଇଁ ବେଶ୍ ଉପଯୋଗୀ ।

କ୍ଷୁଦ୍ରଗଳ୍ପର ଚରିତ୍ର ବିବିଧପ୍ରକାର । ସ୍ଥିତି ଦୃଷ୍ଟିରୁ ମୁଖ୍ୟ ଅଥବା ଗୌଣ; ସ୍ୱଭାବ ଦୃଷ୍ଟିରୁ ଉତ୍ତମ, ମଧ୍ୟମ ଅଥବା ଅଧମ; ପ୍ରକୃତି ଦୃଷ୍ଟିରୁ ବର୍ତ୍ତୁଳ ବା ରୈଖିକ; ଭୂମିକା ଦୃଷ୍ଟିରୁ ନାୟକ ଅଥବା ପ୍ରତିନାୟକ; ଲିଙ୍ଗ ଦୃଷ୍ଟିରୁ ନାରୀ କିମ୍ବା ପୁରୁଷ; ପ୍ରାଣୀ ଦୃଷ୍ଟିରୁ ମାନବ ଅଥବା ମାନବେତର ଏବଂ ଚାରିତ୍ରିକତା ଦୃଷ୍ଟିରୁ ଆଦର୍ଶବାଦୀ ଅଥବା ବାସ୍ତବବାଦୀ ଭାବରେ ଚରିତ୍ରର ବର୍ଗୀକରଣ କରାଯାଇପାରେ । ଦର୍ଶନ ଦୃଷ୍ଟିରୁ ପୁଣି ଚରିତ୍ରକୁ ଅତିବାସ୍ତବବାଦୀ, ପ୍ରଗତିବାଦୀ, ଫ୍ରୟେଡ୍‌ବାଦୀ, ସ୍ୱଚ୍ଛନ୍ଦତାବାଦୀ ଓ ଅସ୍ତିତ୍ୱବାଦୀ ଇତ୍ୟାଦି ବିଭିନ୍ନ ବର୍ଗରେ ବଣ୍ଟନ କରାଯାଇପାରେ ।

**ମୁଖ୍ୟ ଚରିତ୍ର**—କ୍ଷୁଦ୍ରଗଳ୍ପର ମୁଖ୍ୟଚରିତ୍ର ଗଳ୍ପର ଭାରକେନ୍ଦ୍ର ହୋଇଥାଏ । ଏହା ପ୍ରାୟତଃ ବର୍ତ୍ତୁଳ ହୋଇଥାଏ । କାରଣ, ତା'ର ଭୂମିକା ଓ କଥାବସ୍ତୁର ଏକ ପ୍ରତ୍ୟକ୍ଷ ସଂପର୍କ ସୃଷ୍ଟିପାଇଁ ପ୍ରଥମରୁ ତାର ଚେତନାକୁ ଯେଉଁଳି ଗଢ଼ାଯାଇଥାଏ ଏକ ବିଶେଷ ପରିସ୍ଥିତିରେ ତାହା ପରିବର୍ତ୍ତିତ ହୋଇ କଥାବୃତ୍ତ ରଚନା କରିବାରେ ସାହାଯ୍ୟକରେ । ଅନ୍ୟଥା ମୁଖ୍ୟଚରିତ୍ର ଯଦି ରୈଖିକ ହୋଇଥାଏ ତେବେ ତାର କ୍ଷମତା ବଳରେ ସେ ଘଟଣାକୁ ନିୟନ୍ତ୍ରିତ କରି କଥାବୃତ୍ତ ରଚନା କରିପାରେ ।

**ଗୌଣଚରିତ୍ର**—କ୍ଷୁଦ୍ରଗଳ୍ପର ଗୌଣଚରିତ୍ର ଗୁଡ଼ିକ ସ୍ୱଳ୍ପକାଳ ପାଇଁ କଥା ପରିସରକୁ ଆସିଥାନ୍ତି । ମୁଖ୍ୟ ଚରିତ୍ରର ଚାରିତ୍ରିକତାକୁ ବୈଶିଷ୍ଟ୍ୟଦେବା ସେଗୁଡ଼ିକର କାମ ହୋଇଥାଏ । ବେଳେବେଳେ ଗୋଟିଏ ଗୋଟିଏ ଗୌଣଚରିତ୍ର ଚାରିତ୍ରିକ

ମହନୀୟତାରେ ବେଶ୍ ଉଜ୍ଜ୍ୱଳ ହୋଇ ମୁଖ୍ୟ ଚରିତ୍ରର ପ୍ରତିସ୍ପର୍ଦ୍ଧୀ ହୋଇଉଠନ୍ତି । ଏଗୁଡ଼ିକର ଉପସ୍ଥିତି କଥାଭାଗକୁ ଗତିଶୀଳ ଏବଂ ଦ୍ୱନ୍ଦ୍ୱଯୁକ୍ତ କରାଏ । କ୍ଷୁଦ୍ରଗଳ୍ପର ବଳିଷ୍ଠଦ୍ୱନ୍ଦ୍ୱ ଓ ଶୀର୍ଷବିନ୍ଦୁ ସୃଷ୍ଟି କରିବାରେ ମଧ୍ୟ ଏଗୁଡ଼ିକର ଭୂମିକା ରହେ । ବେଳେବେଳେ ଗଳ୍ପର ସମାପ୍ତି ସୂଚାଏ ଏକ ଗୌଣଚରିତ୍ର ।

ନାୟକ—ଯେଉଁ ଚରିତ୍ରକୁ କେନ୍ଦ୍ରକରି ଅଥବା ଭିତ୍ତିକରି କ୍ଷୁଦ୍ରଗଳ୍ପର କଥାବସ୍ତୁ ପ୍ରତିଷ୍ଠାପାଏ; କଥାଭାଗ ଗଠିତ ହୁଏ—ତାହା ନାୟକ ଚରିତ୍ର । ନାୟକ ଚରିତ୍ରକୁ ନେଇ ଗଳ୍ପ ସୃଷ୍ଟି କରାଯାଏ । ଗଳ୍ପ ପରିସରରେ ଯାହାର ଭୂମିକା ପ୍ରୋଜ୍ଜ୍ୱଳ ହୁଏ ସେ ନାୟକ ଚରିତ୍ର ମାନ୍ୟତାପାଏ । ନାୟକ ନିଶ୍ଚିତପକ୍ଷେ ମୁଖ୍ୟ ଚରିତ୍ର ହୋଇଥାଏ । ନାୟକ ସାଧାରଣତଃ ଉତ୍ତମ ମାନବୀୟ ଗୁଣର ଅଧିକାରୀ ହୋଇଥାନ୍ତି କିମ୍ବା କଥାପରିଣତିରେ ତାହା ଅକ୍ତିଆର କରନ୍ତି ।

ନାୟକ ଚରିତ୍ର ବର୍ତ୍ତୁଳ ବା ପରିବର୍ତ୍ତନ ପକ୍ଷପାତୀ ହୋଇଥାଏ । ଆପଣା ଚେତନାର ବିକାଶ ଘଟାଇବା ପାଇଁ ସେ ସର୍ବଦା ପ୍ରୟାସୀ ହୋଇଥାଏ । ନିଜ ଭିତରର ଦ୍ୱନ୍ଦ୍ୱ-ବିକ୍ଷୋଭକୁ ଉତ୍ତୀର୍ଣ୍ଣ ହୋଇ ମହନୀୟତା ପ୍ରଦର୍ଶନ ବା ଆଚରଣ କରିବାକୁ ସେ ସତତ ଚେଷ୍ଟିତ ହୁଏ ।

ଏହାକୁ ପ୍ରତିନିଧି ଚରିତ୍ର ବା ମୁଖପାତ୍ର ଚରିତ୍ର ଭାଷାନ୍ତରରେ 'ହୀରୋ' ଅଥବା ପ୍ରୋଟାଗନିଷ୍ଟ୍ କୁହାଯାଏ । ବିପରୀତ ଲିଙ୍ଗରେ 'ନାୟିକା' ହୁଏ ।

ପ୍ରତିନାୟକ—କ୍ଷୁଦ୍ରଗଳ୍ପ ପରିସରରେ ନାୟକ ସମତୁଲ ଯୋଗ୍ୟତା ଓ ଉଚ୍ଚତା ରଖୁଥିବା କିନ୍ତୁ ଚେତନାରେ ସମାଜ-ନୀତି-ନିୟମ ପ୍ରତି ପ୍ରାତିକୂଲ୍ୟ ଆଚରଣ ପ୍ରଦର୍ଶନ କରୁଥିବା ଅନ୍ୟତମ ବଳିଷ୍ଠ ଚରିତ୍ରକୁ ପ୍ରତିନାୟକ କୁହାଯାଏ । ପ୍ରତିନାୟକ ଉପରେ ବିଜୟ ହାସଲ କରି ନାୟକ ପ୍ରତିଷ୍ଠାପାଏ । ବେଳେବେଳେ ପ୍ରତିନାୟକ ଚରିତ୍ରବତ୍ତା ଦୃଷ୍ଟିରୁ ନାୟକକୁ ନିଷ୍ପ୍ରଭ କରିଦିଏ । କେତେକ କ୍ଷେତ୍ରରେ କ୍ଷୁଦ୍ରଗଳ୍ପରେ ପ୍ରତିନାୟକ ହିଁ ନାୟକ ହୋଇଥାଏ ଅର୍ଥାତ ପ୍ରତିନାୟକ ସୁଲଭ ହୋଇଥାଏ ନାୟକର ଚରିତ୍ରବତ୍ତା । ନାରୀ କ୍ଷେତ୍ରରେ 'ପ୍ରତିନାୟିକା' ହୁଏ ।

ବର୍ତ୍ତୁଳ ଚରିତ୍ର—ଯେଉଁ ଚରିତ୍ର କଥାପରିସରରେ ତାର ଆଭିମୁଖ୍ୟ ପରିବର୍ତ୍ତିତ କରି କିମ୍ବା ପ୍ରତିଷ୍ଠାକରି ନିଜ ଚାରିତ୍ରିକତାର ବିକାଶ ଘଟାଇଥାଏ ତାହା ବର୍ତ୍ତୁଳ ଚରିତ୍ର । ଚରିତ୍ରର ବର୍ତ୍ତୁଳତା ହିଁ ଗଳ୍ପରେ ଉତ୍କଣ୍ଠା, ବିସ୍ମୟ ଓ ପ୍ରଶାନ୍ତି ସୃଷ୍ଟି କରାଇଥାଏ । ମୁଖ୍ୟ ଚରିତ୍ର ବର୍ତ୍ତୁଳ ହେଇଥାଏ ।

ରୈଖିକ ଚରିତ୍ର—କଥାପରିସରରେ ଯେଉଁ ଚରିତ୍ର ଆମୂଳାନ୍ତ ଏକା ଆଭିମୁଖ୍ୟ ବିଶିଷ୍ଟ ହୋଇଥାଏ ତାହା ରୈଖିକ ଚରିତ୍ର । ଏହା ଘଟଣା ପ୍ରତି ଉଦାସୀନ ଏବଂ

ପରିବର୍ତ୍ତନ ପ୍ରତି ନିଷ୍ପୃହ ହୋଇଥାଏ । ଏଭଳି ଚରିତ୍ରର ବିକାଶ ଘଟିନଥାଏ । ଗୌଣ ଚରିତ୍ରଗୁଡ଼ିକ ରୈଖିକ ହୋଇଥାଏ ।

**ଆଦର୍ଶବାଦୀ ଚରିତ୍ର**—ଯେଉଁ ଚରିତ୍ର ପ୍ରତିଷ୍ଠିତ ସାମାଜିକ-ନୈତିକ-ଆଧାତ୍ମିକ-ରାଜନୀତିକ ଏପରିକି ବ୍ୟକ୍ତିଗତ ଆଦର୍ଶ ପ୍ରତି ପ୍ରତିବଦ୍ଧ ଥାଏ; ତାହାର ରକ୍ଷା କିମ୍ବା ପ୍ରତିଷ୍ଠା ପାଇଁ ଆପଣାକୁ ଉତ୍ସର୍ଗୀତ କରିରଖିଥାଏ ଏପରିକି ପ୍ରାଣପାତ କରିବାକୁ ପ୍ରସ୍ତୁତ ଥାଏ ତାହାକୁ ଆଦର୍ଶବାଦୀ ଚରିତ୍ର କୁହାଯାଏ । ପ୍ରତ୍ୟେକ ଜିନିଷର ଶୁଭଦିଗ ଦେଖିବା ଓ ଆଶାବାଦ ପୋଷଣ କରିବା ଏହି ଚରିତ୍ରର ସ୍ୱଭାବ ।

**ବାସ୍ତବବାଦୀ ଚରିତ୍ର**—ଯେଉଁ ଚରିତ୍ର ସାମାଜିକ - ମନସ୍ତାତ୍ତ୍ୱିକ ବାସ୍ତବତା ପ୍ରତି ସଚେତନ ଥାଏ ଏବଂ ଆଦର୍ଶର ପ୍ରଲୋଭନରୁ ନିଜକୁ ମୁକ୍ତ ରଖି ନିଜ କ୍ଷମତା-ଯୋଗ୍ୟତା-ମାନ୍ୟତା ପରିସରରେ କ୍ରିୟାଶୀଳ ରହେ - ଭାଗ୍ୟ କି ଭଗବାନ ଉପରେ ନଛାଡ଼ି ସମସ୍ୟାଟିକୁ ଆପଣାଶକ୍ତିରେ ସମାଧାନ କରିବାକୁ ପ୍ରଚେଷ୍ଟ ହୁଏ; ତାହାକୁ ବାସ୍ତବବାଦୀ ଚରିତ୍ର କୁହାଯାଏ ।

**ଅତିବାସ୍ତବବାଦୀ ଚରିତ୍ର**—ଯେଉଁ ଚରିତ୍ର ସାମାଜିକ ବିଧି-ନିଷେଧ, ନୀତି-ନିୟମ, ନୈତିକତା-ଆଦର୍ଶ ଏବଂ ପରମ୍ପରା ମାନ୍ୟତାର ବିରୋଧରେ ଆପଣା ଐଚ୍ଛିକ ଓ ଅଭିଳଷିତ ପଥରେ ଆପଣା ନିଜସ୍ୱରୀତିରେ ଗମନ କରେ ତାହାକୁ ଅତିବାସ୍ତବବାଦୀ ଚରିତ୍ର କୁହାଯାଏ । ଏହି ଚରିତ୍ର ପାପ-ପୁଣ୍ୟ କିମ୍ବା ଶ୍ଳୀଳ-ଅଶ୍ଳୀଳ ପ୍ରତି ଧ୍ୟାନ ଦିଏନାହିଁ । ଯୌନତାରେ ଯେମିତି ସନ୍ନ୍ୟାସରେ ସେମିତି ଏହି ଚରିତ୍ର ଅତ୍ୟନ୍ତ ନିଷ୍ଠାପର । ମନସ୍ତାତ୍ତ୍ୱିକ ପ୍ରବେଗ ପ୍ରତି ଅତ୍ୟନ୍ତ ସ୍ପର୍ଶକାତର ହୋଇଥାଏ ଏହି ଚରିତ୍ର । ସମାଜ ଉଲ୍ଲଂଘି ଏହି ଚରିତ୍ରର ଆଧାତ୍ମ ଆସ୍ପୃହା ସୁଦ୍ଧା ସ୍ୱତନ୍ତ୍ରଭାବେ ବିବେଚ୍ୟ ।

**ବୟସଭିତ୍ତିକ ଚରିତ୍ର**—ବୟସ ଦୃଷ୍ଟିରୁ ଯେଉଁ ଚରିତ୍ର ଯେଉଁ ବୟସବର୍ଗକୁ ପରିପୋଷକ କରୁଥାଏ ତାହା ସେହି ବର୍ଗର ଚରିତ୍ର ବୋଲି ଚିହ୍ନିତ ହୁଏ । ଯଥା ଶିଶୁ-ଚରିତ୍ର, କିଶୋର-ଚରିତ୍ର, ଯୁବ-ଚରିତ୍ର ଓ ବୃଦ୍ଧ-ଚରିତ୍ର ଇତ୍ୟାଦି ।

**ବର୍ଗହେତୁକ ଚରିତ୍ର**—ଯେଉଁ ଚରିତ୍ର ଯେଉଁ ସାମାଜିକ ବର୍ଗ ଅନ୍ତର୍ଗତ ହୋଇଥାଏ ତାହାକୁ ସେହି ବର୍ଗଚରିତ୍ର କୁହାଯାଏ । ନିମ୍ନବର୍ଗ, ମଧ୍ୟବର୍ଗ ଓ ଉଚ୍ଚବର୍ଗ ଏଭଳି ତିନୋଟି ବର୍ଗଚରିତ୍ର କଥାପରିସରରେ ପ୍ରଯୁକ୍ତ ହୋଇଥାନ୍ତି । ସମାଜବାଦୀ ବାସ୍ତବବାଦୀ କଥାକୃତିରେ ଏଗୁଡ଼ିକୁ ପ୍ରୋଲେତାରିଏତ୍, ପେଟ୍ଟୀ ବୁର୍ଜୁୟା ଓ ବୁର୍ଜୁୟା ଭାବରେ ଅଭିହିତ କରାଯାଏ ।

**ପଦବୀ ଓ ସାମାଜିକ ସ୍ଥିତି ହେତୁକ ଚରିତ୍ର**—ଯେଉଁ ଚରିତ୍ର କଥାପରିସରରେ ଆବଶ୍ୟକତା ଅନୁଯାୟୀ ଆପଣା ପଦବୀ ଓ ସାମାଜିକ ସ୍ଥିତିର ବ୍ୟବହାର କିମ୍ବା

ଅପବ୍ୟବହାର କରୁଥାଏ କିମ୍ବା ସେଥିପ୍ରତି ଅଧିକ ଧ୍ୟାନ-ଧାରଣା-ଆବେଗ ପ୍ରକଟ କରୁଥାଏ କିମ୍ବା ସେଥିବ୍ୟତୀତ ତାର ପରିଚୟ ଅପୂର୍ଣ୍ଣ ରହୁଥାଏ କିମ୍ବା ତାହାହିଁ ତାର ବିଶେଷ ପରିଚୟ ଦ୍ୟୋତିତ କରୁଥାଏ, ତାହାକୁ ସେହି ପଦବୀଯୁକ୍ତ ଓ ସେହି ସ୍ଥିତିଭିତ୍ତିକ ଚରିତ୍ର କୁହାଯାଏ ।

ଉଦାହରଣତଃ ଜମିଦାର, ଗୁମାସ୍ତା, ପିଆଦା, ସିପାହୀ, ଅଫିସର, କିରାଣୀ, ଦପ୍ତରୀ, ଇଞ୍ଜିନିୟର, ଡାକ୍ତର, ପ୍ରଫେସର, ଆଡ୍‌ଭୋକେଟ୍, ପୋଲିସ, ଫାୟାରମ୍ୟାନ୍, ନର୍ସ, ବେହେରା, ନେତା, ମନ୍ତ୍ରୀ, ପି.ଏ., ଷ୍ଟେନୋ, ଡ୍ରାଇଭର, ୱାଚମ୍ୟାନ୍, ଦରୱାନ୍, ମାଳୀ, ଦୋକାନୀ, ଫେରିବାଲା, ରିକ୍ସାବାଲା, ଚାଷୀ, ମୂଲିଆ, ଖଣିଶ୍ରମିକ, ଶିକ୍ଷକ, ବୈଦ୍ୟ ଓ ଅମୀନ ପ୍ରଭୃତି ଚରିତ୍ର । ଏମାନେ ମୁଖ୍ୟତଃ ମଣିଷ । ମଣିଷ ସୁଲଭ ପ୍ରବୃତ୍ତିଗତ ସମସ୍ତ କ୍ରିୟା ପ୍ରତିକ୍ରିୟା ଏମାନଙ୍କଠାରେ ଲକ୍ଷିତ । ମାତ୍ର ଘଟଣାପ୍ରତି ଏମାନଙ୍କ ପ୍ରତିକ୍ରିୟା ପ୍ରଥମେ ଏମାନଙ୍କ ପଦବୀ ଓ ପ୍ରତିଷ୍ଠା ଭିତ୍ତିରେ ଅପେକ୍ଷିତ ହୁଏ । କାରଣ ବୃତ୍ତି ଓ ଦାୟିତ୍ୱ ଦୃଷ୍ଟିରୁ ଏମାନେ ଗୋଟିଏ ଚେତନାର ପ୍ରତିନିଧିତ୍ୱ କରିଥାନ୍ତି । ଯଥା- ଡାକ୍ତରଟିଏ ଯେତେ ମଣିଷ ହେଲେ ବି ପ୍ରଥମେ ତା'ଠାରୁ ଧୈର୍ଯ୍ୟ ଓ ସେବା ହିଁ ଅପେକ୍ଷା ରଖାଯାଏ; ପୋଲିସ୍‌ଠାରୁ ସାହସ ଓ ପ୍ରତ୍ୟୁତ୍ପନ୍ନମତିତା ଏବଂ ସୈନିକଠାରୁ ତ୍ୟାଗ ଓ ଆତ୍ମବଳୀ; ଫାୟାରମ୍ୟାନ୍‌ଠାରୁ ନିର୍ଭୀକତା, ରିକ୍ସାବାଲାଠାରୁ ସରଳତା ଓ ସାଧୁତା ଆଶାକରାଯାଏ ।

କ୍ଷୁଦ୍ରଗଳ୍ପରେ ଏମାନଙ୍କ ଚାରିତ୍ରିକତାରେ ଉଜ୍ଜ୍ୱଳ ମହତ୍ତ୍ୱ ଅଥବା ବିମର୍ଷ ଅଧୋଗତି ଦର୍ଶାଇ ପାଠକୀୟ ଚିତ୍ତବୃତ୍ତିକୁ ଭିନ୍ନରସର ଆବେଶ ଯୋଗାଇଥାଏ ।

ଆଞ୍ଚଳିକ ଚରିତ୍ର— କେତେକ ଚରିତ୍ର ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ସାଂସ୍କୃତିକ, ସାମାଜିକ ଜୀବଚର୍ଯ୍ୟାର ପ୍ରତିନିଧିତ୍ୱ କରନ୍ତି । ସେମାନଙ୍କ ବେଶପୋଷାକଠାରୁ ଭାଷା ଓ ଭଂଗୀ ପର୍ଯ୍ୟନ୍ତ ଏବଂ କୌଣସି ଘଟଣା-ଦୃଶ୍ୟ-ଅନୁଭବ ପ୍ରତି ପ୍ରତିକ୍ରିୟା ସୁଦ୍ଧା ସେହି ଆଞ୍ଚଳିକ ଚେତନାରେ ନିର୍ଜିତ ହୋଇଥାଏ । ଉଦାହରଣତଃ ଆଦିବାସୀ, ନୋଳିଆ, ସାପୁଆ, ହରିଜନ, କେଳା ଓ ଦ୍ୱୀପବାସୀ ମଣିଷ; ସେମାନେ ସେମାନଙ୍କ ପ୍ରାକୃତିକ ରହଣୀସ୍ଥାନ ଓ ସାଂସ୍କୃତିକ ସ୍ପନ୍ଦନ ସହିତ ଗଭୀର ଜଡ଼ିତଥା'ନ୍ତି ।

ସଭ୍ୟତାର ଅଭିଘାତ ପ୍ରତି ଏମାନଙ୍କଠାରେ ସ୍ପଷ୍ଟତଃ ଦୁଇଟି ପ୍ରତିକ୍ରିୟା ଥାଏ (କ) ତୀବ୍ର ବିରୋଧ ଓ ସଂଗ୍ରାମ ଏବଂ (ଖ) ସାଗ୍ରହ (ନିରୁପାୟ) ଯୋଗଦାନ । କଥାକାର ଏଭଳି ଚରିତ୍ରକୁ ଗଳ୍ପରେ ସ୍ଥାନଦେଲେ ତାହା ଆଞ୍ଚଳିକ ଚରିତ୍ର ଭାବେ ବିବେଚିତ ହୁଏ ।

ମାନବେତର ଚରିତ୍ର– ମଣିଷ ଯେ କେବଳ କ୍ଷୁଦ୍ରଗଳ୍ପର ଚରିତ୍ର ହୁଏ ତାହା ନୁହେଁ ଯେ କୌଣସି ପ୍ରାଣୀ, ବସ୍ତୁ, ସ୍ଥାନ, ଘଟଣା ଓ ଚେତନା ଏପରିକି ସମୟ ମଧ୍ୟ ଗଳ୍ପଚରିତ୍ର

ହୋଇପାରେ । ଏମାନଙ୍କୁ ମାନବେତର ଚରିତ୍ର କୁହାଯାଏ । ମାନବେତର ଚରିତ୍ର ମାର୍ଫତରେ କିନ୍ତୁ ପ୍ରକୃତରେ ମାନବୀୟତାର ଆରୋପଣ ଓ ପରୀକ୍ଷଣ କରାଯାଏ ।

ତାର ତ୍ୟାଗ, ପରୋପକାର, ସାହସ ଓ ଶକ୍ତିମତ୍ତା, କାରୁଣ୍ୟ ଅଥବା ଆତ୍ମବଳୀର ଉଜ୍ଜ୍ୱଳତାରେ ସେ ଦୀପ୍ତ ହୋଇଉଠେ । ଭୂମିକାର ସଂକ୍ଷିପ୍ତତା ସତ୍ତ୍ୱେ ରସାବେଶ ସୃଷ୍ଟିରେ ଗୁରୁତ୍ୱପୂର୍ଣ୍ଣ ଅବଦାନ ରଖୁଥିବାରୁ ସେ ପାଠକର ସ୍ମରଣୀୟ ରହେ ।

ମାନବେତର ଚରିତ୍ରଠାରେ କିନ୍ତୁ ମାନବୀୟତ୍ୱ ଆରୋପଣ କରାଯିବା ଯଦିଓ ଲୋକକଥା ବା ପରୀକାହାଣୀ ସୁଲଭ ତଥାପି କ୍ଷୁଦ୍ରଗଳ୍ପରେ କେତେକ କ୍ଷେତ୍ରରେ ଯଥା ସଙ୍କେତଧର୍ମୀ ଓ ରୂପକଧର୍ମୀ ଗଳ୍ପରେ ଏବଂ ଅନୁବର୍ତ୍ତିତ ଗଳ୍ପରେ ତାହା ଏକାନ୍ତ ଆବଶ୍ୟକୀୟ ।

ମାନବେତର ଚରିତ୍ର ମୁଖ୍ୟତଃ ଦ୍ୱିବିଧ । କ- ସ୍ୱୟଂ ବିକଶିତ ଖ- ପରୋକ୍ଷ ଚିତ୍ରିତ । 'କ' ଶ୍ରେଣୀର ଚରିତ୍ର ସ୍ୱୟଂ କଥାପାତ୍ର ଭାବେ ଘଟଣା ଘଟାଇଥାଏ ଏବଂ 'ଖ' ଶ୍ରେଣୀର ଚରିତ୍ର ସଂପର୍କରେ ଲେଖକ ବର୍ଣ୍ଣନା କରି ଘଟଣାଟି କହିଥାନ୍ତି ।

## ଚରିତ୍ର ଚିତ୍ରଣ :

ଗଳ୍ପରେ କଥାବସ୍ତୁ ଜରିଆରେ ଚରିତ୍ରର କିୟତ ପ୍ରକାଶ ଘଟେ । ମାତ୍ର ତାହା ତାକୁ ଚିହ୍ନିବାରେ ଯଥେଷ୍ଟ ହେଉନଥିଲେ ଚରିତ୍ରର ଚାରିତ୍ରିକତା ପରିସ୍ଫୁଟନ କରିବା ଆବଶ୍ୟକ ହୁଏ । କାରଣ ସଂପୃକ୍ତ ଚରିତ୍ରଟି ଘଟଣା-ପରିସ୍ଥିତ-ଚରିତ୍ରାନ୍ତର ଓ ମାନସିକତା ପ୍ରତି ଯେଉଁ ପ୍ରତିକ୍ରିୟା ପ୍ରକାଶ କରିବ ସେଥିପାଇଁ ତାର କାର୍ଯ୍ୟକଳାପ ଓ ଚିନ୍ତାରେ ଅନୁକୂଳ ବା ପ୍ରତିକୂଳ ଲକ୍ଷଣ ପୂର୍ବରୁ ଦର୍ଶାଇ ଦିଆଯିବା ପାଠକ ପାଇଁ ଆବଶ୍ୟକ । ଏହି ସଚେତନ ପ୍ରୟାସକୁ ଚରିତ୍ର ଚିତ୍ରଣ କୁହାଯାଏ ।

ଏଣୁ ହିଁ ଚରିତ୍ର ଚିତ୍ରଣ କ୍ଷୁଦ୍ରଗଳ୍ପର ସଂକ୍ଷିପ୍ତ ପରିସରରେ ଅତ୍ୟନ୍ତ ସଂଯତ ଓ ପରିମିତ ଭାବେ କରାଯାଇଥାଏ । ଏଥିପାଇଁ ସତର୍କତା ମଧ୍ୟ ଜରୁରୀ । କାରଣ ଚରିତ୍ରର ବିକାଶ ଅପେକ୍ଷା ଚରିତ୍ରର ପ୍ରକାଶ ଉପରେ କ୍ଷୁଦ୍ରଗଳ୍ପରେ ଗୁରୁତ୍ୱ ଆରୋପ କରାଯାଏ ।

କ୍ଷୁଦ୍ରଗଳ୍ପରେ ଚରିତ୍ର ଚିତ୍ରଣ ଚାରି ପ୍ରକାରରେ କରାଯାଇପାରେ । (i) କଥାକାର ନିଜେ ଚରିତ୍ରର ରୂପ, ଗୁଣ, ଭାବନା ଓ ଉଦ୍ଦେଶ୍ୟ ବ୍ୟକ୍ତ କରିପାରନ୍ତି; (ii) ଭିନ୍ନ ଚରିତ୍ରର ସଂଳାପ, ବକ୍ତବ୍ୟ, ମତ-ମନ୍ତବ୍ୟ ଓ ଅନୁଭାବନା କ୍ରମେ ଚରିତ୍ରର ଚାରିତ୍ରିକତା ସ୍ପଷ୍ଟ କରାଯାଇପାରେ; (iii) ଚରିତ୍ରର ଆତ୍ମସଂଳାପ ଜରିଆରେ ତା' ସଂପର୍କରେ ବିସ୍ତୃତ ସ୍ୱୀକାରୋକ୍ତି ମୂଳକ ତଥ୍ୟ ପ୍ରକାଶ କରାଯାଇପାରେ ଏବଂ (iv) ଚରିତ୍ରର କାର୍ଯ୍ୟକଳାପ, ଦୃଷ୍ଟିଭଂଗୀ ଓ ଘଟଣାପ୍ରତି ପ୍ରତିକ୍ରିୟା ମାର୍ଫତରେ ଚରିତ୍ର ଚିତ୍ରଣ କରାଯାଇପାରେ ।

ଯେ କୌଣସି ଗୋଟିଏ କିମ୍ବା ଏକାଧିକ ରୀତିରେ ମଧ୍ୟ ଗୋଟିଏ ଗଳ୍ପର ଚରିତ୍ରଗୁଡ଼ିକର ଚିତ୍ରଣ କରାଯାଇପାରେ । ଏପରିକି ଗୋଟିଏ ଚରିତ୍ରର ଚିତ୍ରଣ ପାଇଁ ଏକାଧିକ ରୀତି ପ୍ରୟୋଗ କରାଯାଇପାରେ ।

ସେଭଳି କ୍ଷେତ୍ରରେ ମୁଖ୍ୟ ଓ ଗୌଣ ଚରିତ୍ର ଚିତ୍ରଣ ଉଦ୍ଦେଶ୍ୟରେ ଯେଉଁ ରୀତି ଅଧିକ ଉପାଦେୟ ତାହା ମଧ୍ୟ ସୂଚୀତ ହେବା ଉଚିତ । ଗୌଣ ଚରିତ୍ରଗୁଡ଼ିକ ପାଇଁ ପ୍ରଥମ ରୀତି ଏବଂ ମୁଖ୍ୟ ଚରିତ୍ର ପାଇଁ ପ୍ରଥମ, ତୃତୀୟ ଓ ଚତୁର୍ଥ ରୀତି ଅଧିକ ଫଳପ୍ରସୂ ପ୍ରମାଣିତ ।

ଚରିତ୍ର ଚିତ୍ରଣ ଏକ ଆଧୁନିକ ରୀତି । ପ୍ରାଥମିକ ଭାବେ ଚରିତ୍ର ଚିତ୍ର ହିଁ ଗଳ୍ପରୁ ସୁଲଭ ହେଉଥିଲା । ଏହା ଥିଲା ଏକ ଆୟାମ ବିଶିଷ୍ଟ । ଏଥିରୁ ଚରିତ୍ରର ଅନ୍ତର୍ମନ ଓ ତାର ଦ୍ୱନ୍ଦ୍ୱମୟ ରୂପ ସୁଲଭ ହେଉନଥିଲା । ପରବର୍ତ୍ତୀ କାଳରେ ଚରିତ୍ର ଚିତ୍ରଣ ପ୍ରତି ଲେଖକ ଧ୍ୟାନସ୍ଥ ହୋଇଛି ଓ ଉଦ୍ୟମରେ ସଫଳ ହୋଇଛି ।

ଏଭଳି ହୋଇଛି କ୍ଷୁଦ୍ରଗଳ୍ପରେ ବାସ୍ତବବାଦୀ ଓ ମନୋବିଶ୍ଳେଷଣ ଧର୍ମୀ ଗଳ୍ପଧାରା ଅନୁବର୍ତ୍ତନ ହେତୁ । କାରଣ ଘଟଣା ଅପେକ୍ଷା ବ୍ୟକ୍ତିତ୍ୱର ପ୍ରସ୍ଫୁଟନ ଢରିଆରେ କଥା ଅଭିପ୍ରାୟ ପ୍ରକାଶ କରିବା ଏ ଦୁଇ ଧାରାର ବିଶେଷତ୍ୱ ।

## ୩- ଭାଷା :

ସାହିତ୍ୟରେ ଭାଷାର ଭୂମିକା ମୁଖ୍ୟ, କାରଣ ସାହିତ୍ୟ ଏକ ଭାଷିକ ଓ ଆକ୍ଷରକଳା ।

ଭାଷା ସାହିତ୍ୟନିହିତ ସାରବତ୍ତାକୁ ପାଠକ ହୃଦୟରେ ପହଞ୍ଚାଇବାରେ ପ୍ରମୁଖ ସଂଯୋଜକ ହୋଇଥାଏ । ସଂଯୋଜକ ବା ସଂବାହକ ହୋଇଥିବାରୁ ଭାବାନୁରୂପ ଭାଷା ପ୍ରୟୋଗ ସାହିତ୍ୟ ସୃଷ୍ଟି ପାଇଁ ଅବଶ୍ୟ ଦରକାରୀ । ସାହିତ୍ୟ କ୍ଷେତ୍ରରେ ଯାହା, କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ମଧ୍ୟ ତାହା ।

ମାତ୍ର ସାହିତ୍ୟରେ ଭାଷା ପ୍ରୟୋଗ ସଂପର୍କରେ ଯେଉଁ ବିଚାର ହୁଏ ତାହା ମୁଖ୍ୟତଃ ଏକ ଶୈଳୀଭାବେ ଏବଂ ଶୈଳୀର ରୂପତାତ୍ତ୍ୱିକତା ଭିତ୍ତିରେ କରାଯାଇଥାଏ । ତହିଁରେ ସାହିତ୍ୟକୃତିରେ ଭାଷାର ସ୍ଥାନ-ପରିଚୟ ଓ ଉପଯୋଗିତା ବିଚାର୍ଯ୍ୟ ହୋଇନଥାଏ । ଏଠାରେ ସେ ଦିଗରେ ଏକ ଉଦ୍ୟମ କରାଯାଇଛି ।

(୧) କ୍ଷୁଦ୍ରଗଳ୍ପ ମାତ୍ରକେ ଲିଖିତ । ଲିଖିତ ଅର୍ଥାତ ଏକ ବିକଶିତ ଭାଷାର ସ୍ଥାୟୀ ସ୍ୱରୂପ । ଅତଏବ ପ୍ରଥମତଃ କ୍ଷୁଦ୍ରଗଳ୍ପର ଭାଷା ମାତ୍ରକେ କୌଣସି ଏକ ବିକଶିତ ଭାଷାର ଲିଖିତ ଗଦ୍ୟଭାଷା । ଏହା ସେହି ଭାଷାର ଲିପି, ବର୍ଣ୍ଣ ଓ ବ୍ୟାକରଣ ପ୍ରତି ବିଶ୍ୱସ୍ତ ହେବାକୁ ବାଧ୍ୟ । ପୁନଶ୍ଚ ଆଞ୍ଚଳିକତା ଓ ଆଚାରବିଚାର ଦୃଷ୍ଟେ,

ତାହାର ସାଂସ୍କୃତିକ ଓ ସାମାଜିକ ପ୍ରେକ୍ଷାରେ, ଉଚ୍ଚାରଣ ଓ ପ୍ରୟୋଗ ଭେଦରେ ଶବ୍ଦ ଓ ପଦ ପ୍ରତି ତାହା ବିଶ୍ୱସ୍ତ ହେବା ଜରୁରୀ । ଭାଷାର ଲିଖିତ ରୂପ ହିଁ ଗଳ୍ପର ଭାଷା । ଏଣୁ 'କ୍ଷୁଦ୍ରଗଳ୍ପର ଭାଷା' କହିଲେ ପ୍ରଥମତଃ କ୍ଷୁଦ୍ରଗଳ୍ପରେ ବ୍ୟବହୃତ ଲିଖିତଭାଷାର ଗଦ୍ୟରୂପର ଧର୍ମକୁ ବୁଝିବାକୁ ହେବ ।

(୨) ମାତ୍ର କ୍ଷୁଦ୍ରଗଳ୍ପର ଭାଷା ସବୁବେଳେ ମାନକ ଗଦ୍ୟଭାଷା ହୁଏନାହିଁ । ଏହା ସବୁବେଳେ ବ୍ୟାକରଣ ନିର୍ଦ୍ଧାରିତ ସୂତ୍ରକୁ ସ୍ୱୀକାର କରେନାହିଁ । ଶବ୍ଦ ଗୁଂଫନରେ, ପଦନିର୍ମାଣ ଓ ସଂଯୋଜନରେ, ପଦ ଖଚିତ କରିବାରେ, ସମାସ ଓ ବିଭକ୍ତି ସୂଚକ ପଦ ପ୍ରୟୋଗରେ, କର୍ମପଦର ଅତିରିକ୍ତ ପ୍ରୟୋଗରେ, କ୍ରିୟାପଦର କାଳ ଓ କାରଣ ଭେଦରେ ସର୍ବୋପରି ପଦସଂସ୍ଥାପନରେ ଏବଂ ବିରାମ ଚିହ୍ନର ବସାଣରେ ପ୍ରତ୍ୟେକ ଲେଖକ ଅନ୍ୟଠାରୁ ପୃଥକ ହୋଇଥାନ୍ତି । ଏହି ଭିନ୍ନତା ହିଁ ସେହି ଲେଖକଙ୍କ ଭାଷା ହୋଇଥାଏ ଏବଂ ତାଙ୍କ ଲିଖିତ ଗଳ୍ପର ଭାଷା ହୋଇଥାଏ । ଅତଏବ ଦ୍ୱିତୀୟତଃ 'କ୍ଷୁଦ୍ରଗଳ୍ପର ଭାଷା' କହିଲେ ଗଳ୍ପକାରର ବାକ୍ୟନିର୍ମାଣର ରୀତିକୁ ବୁଝିବା ।

(୩) ଗାଳ୍ପିକ ଯେଉଁ ପ୍ରସଙ୍ଗ ବ୍ୟବହାର କରି ଗଳ୍ପ ରଚନା କରିଥାଏ ତାହା ଗଳ୍ପର ଭାଷାକୁ କେତେକାଂଶରେ ନିୟନ୍ତ୍ରଣ ଦେଇଥାଏ । ଉଦାହରଣତଃ ପୌରାଣିକ, ଐତିହାସିକ ଓ ବୈଜ୍ଞାନିକ ପ୍ରସଙ୍ଗରେ ଯେଉଁ ଭାଷା ବ୍ୟବହୃତ ହୁଏ ତାହା ସାମାଜିକ-ପାରିବାରିକ ପ୍ରସଙ୍ଗ ଉପଯୋଗୀ ଭାଷାଠାରୁ ଭିନ୍ନ । କାରଣ ଏଥିରେ ଅଲୌକିକ, ଅଦ୍ଭୁତ ଓ ଅଭୂତ ଘଟଣା ଘଟେ ଏବଂ ଗାନ୍ଧର୍ବକଳା, ସମର ସାଧନା-କୂଟନୀତି-ରାଜନୀତି ଓ ବିଜ୍ଞାନ ସଂପର୍କୀୟ ବିଶଦଚର୍ଚ୍ଚା ହୋଇଥାଏ ଯାହା ସାମାଜିକ ପ୍ରସଙ୍ଗରେ ବ୍ୟବହାର ହୁଏନାହିଁ । ସେଗୁଡ଼ିକର ପାରିଭାଷିକ ଶବ୍ଦ ପ୍ରୟୋଗ ସଂପୃକ୍ତ ଗଳ୍ପ ପାଇଁ ଏକାନ୍ତ ଦରକାରୀ । ଅତଏବ ତୃତୀୟତଃ 'କ୍ଷୁଦ୍ରଗଳ୍ପର ଭାଷା' କହିଲେ ଗଳ୍ପଗୃହୀତ ପ୍ରସଙ୍ଗ ଅନୁରୂପ ଭାଷାର ରୂପକୁ ବୁଝିବା ।

(୪) ଗଳ୍ପକାରର ପ୍ରକାଶଭଂଗୀର ମଧ୍ୟ ଏକ ନିଜସ୍ୱତା ଥାଏ । ସେ କୌଣସି ଦୃଶ୍ୟକୁ ସିଧାସଳଖ ବର୍ଣ୍ଣନା ନକରି ତାହାକୁ ସଂକେତ, ରୂପକ, ପ୍ରତୀକ ଓ ଚିତ୍ରକଳ୍ପ ଜରିଆରେ ପ୍ରକାଶ କରିପାରନ୍ତି । ଧ୍ୱନିସାମ୍ୟ, ଭାବସାମ୍ୟ ଓ ଅନୁଭବସାମ୍ୟ ଥାଇ ଶବ୍ଦ-ପଦ ସୃଷ୍ଟିକରିପାରନ୍ତି ଓ ପ୍ରୟୋଗ ମଧ୍ୟ କରିପାରନ୍ତି । ପରିବେଶ ଓ ବାତାବରଣର ଚିତ୍ର ଦେବାକୁ ଯାଇ କିମ୍ବା ଚରିତ୍ରର ଅନ୍ତର୍ମନଚ ବିବୃତିପାଇଁ ଏ ପ୍ରକାର ରୂପକ-ଚିତ୍ରକଳ୍ପ ଗର୍ଭିତ ଓ ଧ୍ୱନିଅନୁସାରୀ ଭାଷା ଗଳ୍ପରେ ପ୍ରଯୁକ୍ତ

ହୁଏ । ଅତଏବ ଚତୁର୍ଥତଃ 'କ୍ଷୁଦ୍ରଗଳ୍ପର ଭାଷା' କହିଲେ ଗଳ୍ପର ପ୍ରକାଶ ଭିତ୍ତିକ ଭାଷା ।

(୫) ଗଳ୍ପରେ କେବଳ ଗାଳ୍ପିକ ବର୍ଣ୍ଣନା କରନ୍ତିନାହିଁ । ଗାଳ୍ପିକଙ୍କ ସମେତ ଗଳ୍ପଚରିତ୍ର ମଧ୍ୟ କେତେକସ୍ଥଳରେ କଥାକହନ୍ତି । ଶିଷ୍ଟ ଚରିତ୍ରଙ୍କ କ୍ଷେତ୍ରରେ ଗାଳ୍ପିକ ନିଜଭାଷା (ଗଳ୍ପ ବର୍ଣ୍ଣନାର ଭାଷା) ପ୍ରୟୋଗ କରିଥାନ୍ତି । ମାତ୍ର କେତେକ ଚରିତ୍ର କ୍ଷେତ୍ରରେ କଥାକାର ସେମାନଙ୍କ ସ୍ଥାନିକତା-ଶିକ୍ଷା-ପଦବୀ-ପ୍ରତିଷ୍ଠା-ଅବସ୍ଥା ଦୃଷ୍ଟିରୁ ସେମାନଙ୍କ ନିଜତୁଣ୍ଡର ଭାଷା ପ୍ରୟୋଗ କରିଥାନ୍ତି । ଫଳରେ ଚରିତ୍ରର ଭାଷାର ଅନୁରୂପ ହେବାକୁ ଯାଇ ଗଳ୍ପଭାଷାରେ ଠାଏଠାଏ ଭିନ୍ନଭାଷା ସଂଯୁକ୍ତ ହୋଇଥାଏ । ବାସ୍ତବବାଦୀ, ଆଞ୍ଚଳିକ ଓ ସଂଳାପଧର୍ମୀ ଗଳ୍ପରେ ଏପ୍ରକାର ଭାଷାରୀତି ସୁଲକ୍ଷ । ଅତଏବ ପଞ୍ଚମତଃ 'କ୍ଷୁଦ୍ରଗଳ୍ପର ଭାଷା' କହିଲେ ଗଳ୍ପ-ଚରିତ୍ରର ଭାଷା ।

(୬) ଘଟଣା ସହିତ ବା ବ୍ୟତୀତ ଗାଳ୍ପିକର ମୁଡ୍ ବା ଆବେଗର ପ୍ରେରଣାରୁ ମଧ୍ୟ ଗଳ୍ପ ରଚିତ ହୁଏ । ଆବେଗାଶ୍ରୟୀ ଗଳ୍ପବକ୍ତବ୍ୟ ଅଥବା ଗୃହୀତ ଚରିତ୍ରର ନିର୍ଦ୍ଦିଷ୍ଟ ଆବେଗର ରୂପାୟନ କ୍ଷେତ୍ରରେ କଥାକାର ଗଦ୍ୟରେ ସୁଦ୍ଧା ପଦ୍ୟରୀତିର ଭାଷା ସଂସ୍ଥାପନ କରିଥାନ୍ତି । ଆବେଗର ତାଳ ଓ ଲୟକୁ ଅନୁସରଣ କରି. ଗଳ୍ପଭାଷା ଦ୍ରୁତ ବା ବିଳମ୍ବିତ ହୁଏ । ଗୀତିଧର୍ମୀ, ମନସ୍ତାତ୍ତ୍ୱିକ, ବୈୟକ୍ତିକ ଗଳ୍ପକ୍ଷେତ୍ରରେ ଏହିରୀତି ଅବାରିତ । ଅତଏବ ଷଷ୍ଠତଃ 'କ୍ଷୁଦ୍ରଗଳ୍ପର ଭାଷା' କହିଲେ ଗଳ୍ପନିହିତ ଆବେଗାନୁକୂଳ ଭାଷାର ପ୍ରକାଶ ବୁଝିବାକୁ ହୁଏ ।

ଉପର ନିର୍ଦ୍ଧାରିତ ଛ'ଟି ପରିପ୍ରେକ୍ଷୀରେ କ୍ଷୁଦ୍ରଗଳ୍ପର ଭାଷା ବିଚାର୍ଯ୍ୟ ଓ ବିବେଚ୍ୟ ହୁଏ । ଏ ସମସ୍ତର ଏକ ସାମଗ୍ରିକ ଆଭାସ ପାଠକକୁ କୌଣସି ଗଳ୍ପର ଭାଷା ସଂପର୍କରେ ଏକ ଅବବୋଧ ଦିଏ । ପାଠକ ଗଳ୍ପଭାଷାକୁ 'ଚମତ୍କାର' ଅଥବା 'କ୍ଳାନ୍ତିକର' ବୋଲି କହେ । ପାଠକ ଓ ସମୀକ୍ଷକ ଦେଖନ୍ତି ଯେ, ଗଳ୍ପର ଭାଷା—'ସାବଲୀଳ, ସ୍ୱଚ୍ଛନ୍ଦ କଥନରୀତିର ଅନୁରୂପ' ଅଥବା 'ତରଳ-ପ୍ରବାହଧର୍ମୀ-କବିତାନୁଗ' ଅଥବା 'ବୌଦ୍ଧିକ-ଉଚ୍ଚାଙ୍ଗ-ଧୃପଦୀ' ଅଥବା 'ପାତ୍ରୋଚିତ, ପରିସ୍ଥିତ୍ୟୁଚିତ, ପରିବେଶୋଚିତ, ପ୍ରସଙ୍ଗୋଚିତ' ଅଥବା 'ସମାସ୍ୟାକ୍ରାନ୍ତ, ଜଟିଳ, ସଂଯୁକ୍ତ, ଧ୍ୱନ୍ୟାତ୍ମକ' ଅଥବା 'ତତ୍ସମ, ତଦ୍ଭବ ଓ ଉଭୟର ସମନ୍ୱୟରେ ନବୀନ' ଅଥବା 'ଦେଶୀ, ବିଦେଶୀର ସଂଯୋଗ'—ହୋଇଅଛି । ମାତ୍ର ଏଭଳି ଏକ ମନ୍ତବ୍ୟ ପାଇବାକୁ ପ୍ରତିଗଳ୍ପକୁ ଉପରସୂଚୀତ ଛ'ଟି ସ୍ତରଦେଇ ଆସିବାକୁ ହୋଇଥାଏ ।

ଗଳ୍ପର ଶୈଳୀ ବିଚାର କ୍ରମେ ତହିଁରେ ମୁଖ୍ୟତଃ ଗଳ୍ପଭାଷାର ପ୍ରୟୋଗକୁ ଆଧାର କରାଯାଇଥିବା ଲକ୍ଷ୍ୟ କରାଯାଏ । ଭାଷା ଗଳ୍ପର ଶୈଳୀ ନିରୂପଣ କରେ ନାହିଁ ବରଂ

ନିର୍ଦ୍ଦିଷ୍ଟ ଗଳ୍ପଶୈଳୀ ପାଇଁ ଭାଷାର ରୀତି ନିରୂପଣ କରାଯାଏ । ଉଦାହରଣତଃ 'ଆଞ୍ଚଳିକ ଗଳ୍ପ' ପାଇଁ ସ୍ଥାନୀୟ ଭାଷା ପ୍ରୟୋଗ କରାଯାଇଥାଏ ମାତ୍ର ସ୍ଥାନୀୟ ଭାଷାରେ ଯେକୌଣସି ବିଷୟଭିତ୍ତିକ ଗଳ୍ପ ଲେଖିଲେ ତାହା 'ଆଞ୍ଚଳିକ ଗଳ୍ପ' ହୁଏ ନାହିଁ । ଭାଷା ଶୈଳୀର ଏକ ପରିପୋଷକ ଅଙ୍ଗ, ସ୍ୱୟଂ ଶୈଳୀ ନୁହେଁ ।

## ୪- ବାତାବରଣ :

କ୍ଷୁଦ୍ରଗଳ୍ପରେ ପରିବେଶ ଓ ବାତାବରଣର ଭୂମିକା ଗୁରୁତ୍ୱପୂର୍ଣ୍ଣ । ପରିବେଶ ପ୍ରସଙ୍ଗରେ ସ୍ଥାନିକତା, ସ୍ଥାନୀୟତା, ସ୍ଥାନର ଦୃଶ୍ୟଗତ ପଟ୍ଟ, ଘଟଣାର କ୍ଷେତ୍ର, ଘଟଣା କ୍ଷେତ୍ରର ନକ୍ସା ଓ ପ୍ରକୃତିକୁ ବୁଝାଯାଏ । ଏହା କ୍ଷୁଦ୍ରଗଳ୍ପର କାଳ ଓ ପାତ୍ରର ଯୌକ୍ତିକତା ତଥା ଉପଯୋଗିତା ସାବ୍ୟସ୍ତ କରେ । ଉଦାହରଣତଃ ଯଦି କ୍ଷୁଦ୍ରଗଳ୍ପର ବର୍ଣ୍ଣିତ କାଳ ଅପରାହ୍ନ ଓ ପାତ୍ର ଭ୍ରମଣଆମୋଦୀ ଯୁବକ ତେବେ, ପରିବେଶ ଆସନ୍ନ ସୂର୍ଯ୍ୟାସ୍ତ ହେବା ଯୁକ୍ତିଯୁକ୍ତ । ଏହାର ଉପଯୋଗୀ ଅଂଶଭାବେ ସ୍ଥାନ—ନଦୀତଟ, କ୍ଷେତ୍ର—ଘାଟ, ନକ୍ସା—ବ୍ୟସ୍ତଘାଟର ଚିତ୍ର ଏବଂ ପ୍ରକୃତି—ପ୍ରଶାନ୍ତ ଓ ପ୍ରୀତିପ୍ରଦ ହେବା ସ୍ୱାଭାବିକ ।

ଏହିଭଳି ପରିବେଶରେ କାଳର ଭୂମିକା ଯୋଗୁଁ ବା ଘଟଣାର ପ୍ରଭାବ ହେତୁ ପାତ୍ରଠାରେ ଯେଉଁ ମାନସିକ ସ୍ଥିତି ଉତ୍ପନ୍ନ ହୁଏ ତାହା ହୁଏ କ୍ଷୁଦ୍ରଗଳ୍ପର ବାତାବରଣ । ସେହି ଉଦାହରଣରେ - ପ୍ରଶାନ୍ତ ପ୍ରାକୃତିକ ଅବସ୍ଥା, ନଦୀତଟ, ଘାଟର ବ୍ୟସ୍ତତା ଭିତରେ ପ୍ରୀତିସ୍ନିଗ୍ଧ ପରିବେଶରେ ଥାଇ ନାୟକ ନିଶ୍ଚିନ୍ତ ଓ ହୃଷ୍ଟ । ସେହି ସମୟରେ ଘାଟଭିଡ଼ିବାକୁ ଆସୁଥିବା ନାଆ ଅକସ୍ମାତ ଦୁର୍ଘଟଣାଗ୍ରସ୍ତ ହୁଏ । ଏ ଘଟଣା ହଠାତ ସେଠାରେ ଚାଞ୍ଚଲ୍ୟ ଖେଳାଇଦିଏ ଓ ଏକା ପରିବେଶ ଥାଇ ସୁଦ୍ଧା ପରିସ୍ଥିତି ହୋଇଉଠେ କରୁଣ, ଗମ୍ଭୀର, ଶୋକପ୍ରଦ । ଏହି କାରୁଣ୍ୟ-ଗାମ୍ଭୀର୍ଯ୍ୟ-ଶୋକାର୍ଦ୍ର ଅନୁଭବର ତୀବ୍ରତା ହେଉଛି ବାତାବରଣ । ଏହା ଯେତେ ଅଧିକ କାଳ ସ୍ଥାୟୀ ହୁଏ, ଯେତେ ଅଧିକ ପାତ୍ରଙ୍କୁ ପ୍ରଭାବିତ କରେ ଏବଂ ଯେତେ ଅଧିକ ସ୍ଥାନକୁ ବ୍ୟାପ୍ତ ହୁଏ ବାତାବରଣ ସେତେ ପ୍ରଗାଢ଼, ପ୍ରଭାବ ଉତ୍ପାଦକ ଏବଂ ରସନିଷ୍ପାଦକ ହୁଏ ।

ବେଳେବେଳେ ଏକ ବାତାବରଣୀୟ ସ୍ଥିତିରେ ଗଳ୍ପ ସମାପ୍ତ ହୁଏ କିମ୍ବା ବାତାବରଣୀୟ ସ୍ଥିତିରୁ ଗଳ୍ପ ଆରମ୍ଭ ହୁଏ ।

ବାତାବରଣ ସୃଷ୍ଟିରେ ଆକସ୍ମିକତାର ଭୂମିକା ସହିତ ପରିବେଶର ପ୍ରଭାବ କ୍ରିୟାଶୀଳ ।

କେହି କେହି ବାତାବରଣକୁ ଲଘୁ ଅର୍ଥରେ ଗ୍ରହଣ କରନ୍ତି । ସେମାନେ କ୍ଷେତ୍ରୀୟ ଓ ଆଞ୍ଚଳିକ ଚିତ୍ରକୁ ବାତାବରଣ କହିଥାନ୍ତି । ବିଦେଶୀ ସ୍ଥାନ ଓ ନୂତନ ସ୍ଥାନ ପରିପ୍ରେକ୍ଷୀରେ ପାଠକକୁ ତଦୀୟ ସ୍ଥାନୀୟତା ସହ ପରିଚିତ କରାଇବାକୁ ଯେଉଁ ବିସ୍ତୃତ

ବର୍ଣ୍ଣନା ପ୍ରଦାନ କରାଯାଏ ତାହାକୁ ହିଁ ବାତାବରଣ ବୋଲି ସେମାନେ ଉଲ୍ଲେଖ କରିଥାନ୍ତି । ମାତ୍ର 'ପରିବେଶ' ଶବ୍ଦ ଏଥିପାଇଁ ପର୍ଯ୍ୟାପ୍ତ ।

ପରିବେଶ ଭୌତିକ ଓ ବାତାବରଣ ମାନସିକ ।

ଆଲୋଚିତ ଉପାଦାନ ଚତୁଷ୍ଟୟ କ୍ଷୁଦ୍ରଗଳ୍ପର ପଞ୍ଜର ତିଆରିକରେ । ତାହାର ଆଙ୍ଗିକ ବିଧାନକରେ । ମାତ୍ର ଭାବ ବା ଦର୍ଶନ ହିଁ ଗଳ୍ପର ଆତ୍ମା । ଗୋଟିଏ ଭଲ ବକ୍ତବ୍ୟ ପାଇଁ ଭଲ ଆଙ୍ଗିକର ପ୍ରୟୋଜନୀୟତା ଦୃଷ୍ଟିରୁ କ୍ଷୁଦ୍ରଗଳ୍ପର ଆଙ୍ଗିକ ଉପାଦାନର ଯଥାଯଥ ବିନ୍ୟାସ ଅତ୍ୟନ୍ତ ଜରୁରୀ; ଅନ୍ୟଥା ଗଳ୍ପ ତାହାର ଆବେଦନ କ୍ଷମତା ହରାଇବସିବା ସାରହୁଏ ।

କେହି କେହି ଆଲୋଚକ ଏହି ପ୍ରସଙ୍ଗରେ ସମୟ, ସମତା ଓ ସଂକ୍ଷିପ୍ତି ଆଦି ବିଚାର କରିଥାନ୍ତି । ମାତ୍ର ମୁଁ ସେଗୁଡ଼ିକୁ ଗଳ୍ପର ବିଶେଷ ଲାକ୍ଷଣିକତା ମନେକରେ । ତଦନୁଯାୟୀ ପ୍ରକୃତି ଶିରୋନାମାଧୀନ ପରିଚ୍ଛେଦରେ ସେଗୁଡ଼ିକ ଆଲୋଚିତ ।

# ପ୍ରକୃତି

କେଉଁ ଲାକ୍ଷଣିକତା କ୍ଷୁଦ୍ରଗଳ୍ପକୁ ଏକ ଶିଳ୍ପକର୍ମର ମର୍ଯ୍ୟାଦା ଦିଏ ? ଏହାର କାହାଣୀ ? ଦୈର୍ଘ୍ୟ ? ଚମତ୍କାରିତା ? ଆକସ୍ମିକତା ? ନାଟକୀୟତା ? ଦାର୍ଶନିକତା ? ଜୀବନଚିତ୍ରଣ ଦକ୍ଷତା ? ଚରିତ୍ରର ସମାବେଶ ? ଭାଷାର କୁଶଳତା ? —କେଉଁଟି ବା କେଉଁଗୁଡ଼ିକ ?

ଉପନ୍ୟାସରେ ବରଂ ପ୍ରଶସ୍ତ କାହାଣୀ ଥାଏ; ପ୍ରବନ୍ଧ ରମ୍ୟରଚନା ଆଦି ଅନୁରୂପ ଦୈର୍ଘ୍ୟ ବିଶିଷ୍ଟ ; ଭ୍ରମଣ କାହାଣୀରେ ଚମତ୍କାରିତାର ମାତ୍ରା ପର୍ଯ୍ୟାପ୍ତ; ଆକସ୍ମିକତା ଓ ନାଟକୀୟତା ନାଟକର ହିଁ ବିଶେଷଗୁଣ; ପ୍ରବନ୍ଧରେ ଦାର୍ଶନିକତା ପାଇଁ ସୁଯୋଗ ପ୍ରଶସ୍ତ; ଉପନ୍ୟାସ ଓ ଜୀବନୀ ଜୀବନ ଚିତ୍ରଣରେ ଦକ୍ଷ; ଉପନ୍ୟାସରେ ବିପୁଳ ଓ ସ୍କେଚ୍‌ରେ ଅତ୍ୟଳ୍ପ ଚରିତ୍ର ସମାବେଶ ହୁଏ; ରମ୍ୟରଚନାରେ ଭାଷାର ବିନ୍ଧାଣୀପଣ ଦର୍ଶାଇବା ସୁକର—ତେବେ କେଉଁ ଲକ୍ଷଣ କ୍ଷୁଦ୍ରଗଳ୍ପକୁ ସ୍ୱାତନ୍ତ୍ର୍ୟ ଓ ବୈଶିଷ୍ଟ୍ୟ ମଣ୍ଡିତ କରେ ?

'କ୍ଷୁଦ୍ରଗଳ୍ପ'ର ପ୍ରଥମ ବ୍ୟାକରଣଗତ ବିଚାରଠାରୁ ବର୍ତ୍ତମାନ ଯାଏ ଯେତେଯେତେ ବିଚାର-ବିଶ୍ଳେଷଣ ଓ ବ୍ୟାଖ୍ୟା କରାଯାଇଛି ସେ ସବୁଗୁଡ଼ିକରେ ତାହାର 'ଅନିବାର୍ଯ୍ୟ ଗୁଣ' ଭାବେ ଐକିକତାକୁ ଗୁରୁତ୍ୱ ଦିଆଯାଇଛି ।

ଚରିତ୍ରର ଐକିକତା, ଉଦ୍ଦେଶ୍ୟର ଐକିକତା ଏବଂ ଆବେଗର ଐକିକତା ଏହି ପ୍ରସଙ୍ଗରେ ଗୁରୁତ୍ୱପୂର୍ଣ୍ଣ । ଫରାସୀ ଚିରାୟତ ନାଟକ ସୁଲଭ କ୍ଷୁଦ୍ରଗଳ୍ପ ଏକାଦିନରେ ଏକ ସ୍ଥାନରେ ଏକ ଘଟଣାର ଉପସ୍ଥାପନ କରିଥାଏ । ଜଣେ ସମୀକ୍ଷକ ଏହାକୁ ସାମାନ୍ୟ ଭିନ୍ନଭାବେ ଉପସ୍ଥାପିତ କରନ୍ତି । ତାଙ୍କ ମତରେ ଉଦ୍ଦେଶ୍ୟର ଏକମୁଖୀନତା ଓ ପ୍ରଭାବର ଏକକତ୍ୱ କ୍ଷୁଦ୍ରଗଳ୍ପର ଲକ୍ଷଣ ।

ତେବେ କ୍ଷୁଦ୍ରଗଳ୍ପର ବିଶେଷ ଲାକ୍ଷଣିକତା ହେଉଛି ଐକ୍ୟ, ସଂକ୍ଷିପ୍ତି, ସମତା ଓ ସମୟ ତତ୍ତ୍ୱ ।

**ଐକ୍ୟ**—କ୍ଷୁଦ୍ରଗଳ୍ପର କଥାଭାଗ, ଚରିତ୍ର ଓ ପରିବେଶ ଏବଂ ପରିଣତି ମଧ୍ୟରେ ନିବିଡ଼ ଐକ୍ୟ ଆବଶ୍ୟକ । ଯଦି କଥାଭାଗ ଇତିହାସ କୈନ୍ଦ୍ରିକ ତେବେ ଚରିତ୍ର ଇତିହାସ ସମର୍ଥିତ ଏବଂ ପରିବେଶ ଇତିହାସ ସୁଲଭ ହେବା ଜରୁରୀ । ସେମିତି ପରିବେଶ ଯଦି

ଆଞ୍ଚଳିକ ତେବେ ଚରିତ୍ର ଓ କଥାଭାଗ ମଧ୍ୟ 'ଆଞ୍ଚଳିକ' ହେବା ଉଚିତ। ଚରିତ୍ର ଯଦି ନଗରବାସୀ ସମ୍ଭ୍ରାନ୍ତ ତେବେ କଥାଭାଗ ଓ ପରିବେଶ ନଗର ଭିତ୍ତିକ ହେଲେ ଚରିତ୍ରର ପ୍ରକାଶ ସ୍ୱଚ୍ଛନ୍ଦ ହୁଏ।

ପୁନଶ୍ଚ କ୍ଷୁଦ୍ରଗଳ୍ପର ଉଦ୍ଦେଶ୍ୟ ଓ ତାର ପରିଣତି ଏକମୁଖୀ ହେବା ଉଚିତ। ଉଦ୍ଦେଶ୍ୟକୁ ବ୍ୟର୍ଥ କରି ଯଦି ଅନାକାଙ୍କ୍ଷିତ କେଉଁ ପରିଣତିରେ ଗଳ୍ପ ପହଞ୍ଚେ ତେବେ ତାହା ବିଫଳ ହୁଏ। ତେଣୁ ଗୃହୀତ ଭାବ, ନିର୍ବାଚିତ ଚରିତ୍ର ମାଧ୍ୟମରେ, ନିରୂପିତ କଥାଭାଗ ଆଶ୍ରୟରେ ନିର୍ଦ୍ଦିଷ୍ଟ କଥାପରିଣତି ଭେଟିବା କ୍ଷୁଦ୍ରଗଳ୍ପର ସଫଳତା।

ସର୍ବୋପରି କ୍ଷୁଦ୍ରଗଳ୍ପର ପ୍ରତୀତି ବା ପ୍ରଭାବ ମଧ୍ୟ ଐକ୍ୟ ଶୃଙ୍ଖଳର ଅନ୍ତିମ କଡ଼ି ହୋଇଥାଏ। ପୂର୍ବ ସୂଚୀତ କଥାଭାଗ, ଚରିତ୍ର, ପରିବେଶ, ଉଦ୍ଦେଶ୍ୟ ଓ ପରିଣତି ପାରସ୍ପରିକ ଐକ୍ୟ ବିଧାନ କରି ସାମଗ୍ରିକ ଭାବେ ଯେଉଁ ପ୍ରତୀତି ସୃଷ୍ଟିକରେ ତାହାର ସୁଦ୍ଧା ଐକ୍ୟ ବିଧାନ ହେବା ବାଞ୍ଛନୀୟ। ଯୁକ୍ତିଯୁକ୍ତ, ସ୍ୱାଭାବିକ ଓ ସହଜ ପ୍ରେରିତ ହେଲେ ପ୍ରତୀତି ବଳିଷ୍ଠ ହୁଏ।

**ସଂକ୍ଷିପ୍ତି**—ସଂକ୍ଷିପ୍ତି କ୍ଷୁଦ୍ରଗଳ୍ପର ବିଶେଷତ୍ୱ। ସଂକ୍ଷିପ୍ତିର ସୀମା ଆକାର ସୀମା ଦ୍ୱାରା ସୂଚୀତ ହୁଏ ନାହିଁ। ଆକାରଗତ ସଂକ୍ଷିପ୍ତି ବା ଦୀର୍ଘତା ଭିନ୍ନ ପ୍ରସଙ୍ଗ। ଆକାରରେ ସଂକ୍ଷିପ୍ତ ହେଉବା ଦୀର୍ଘ; କ୍ଷୁଦ୍ରଗଳ୍ପର ସଂକ୍ଷିପ୍ତି କହିଲେ ଏହାର କଥାବସ୍ତୁର ଘନ ସନ୍ନଦ୍ଧତାକୁ ବୁଝାଏ। କ୍ଷୁଦ୍ରଗଳ୍ପର କଥାବସ୍ତୁ ସଂକ୍ଷିପ୍ତ ହେବା ଉଚିତ। ଉଦାହରଣତଃ 'ରେବତୀ' ଗଳ୍ପରେ କଥାବସ୍ତୁ ଦୀର୍ଘ। ଶ୍ୟାମବନ୍ଧୁଙ୍କ ବ୍ୟକ୍ତିତ୍ୱ ନିର୍ମାଣ - ଗ୍ରାମ୍ୟ ପରିବେଶ ଚିତ୍ରଣ - ନାୟକର ଆବିର୍ଭାବ - ନାୟିକାର ନାୟିକା ସୁଲଭ ଅନୁଭବ - ଶ୍ୟାମବନ୍ଧୁ ପରିବାରର ବିପତ୍ତି - ନାୟକର ବିପତ୍ତି - ନାୟିକାର ମନୋଦଶା - ଜେଜୀମାର ଉଦ୍ୟମ - ଉଭୟଙ୍କର ମୃତ୍ୟୁ ପ୍ରଭୃତି ବିଭିନ୍ନ ପ୍ରସଙ୍ଗର ପ୍ରସ୍ତପ୍ରସ୍ତ ଓ ଦୀର୍ଘକାଳିକ ସମାବେଶ 'ରେବତୀ' ଗଳ୍ପରେ ଘଟିଛି। ଏଣୁ ରେବତୀ କ୍ଷୁଦ୍ରଗଳ୍ପ ଦୃଷ୍ଟିରୁ ବିଫଳ ; ଏହାକୁ 'କାହାଣୀଧର୍ମୀ କ୍ଷୁଦ୍ରଗଳ୍ପ' କୁହାଯାଇପାରେ। ଅନ୍ୟପକ୍ଷରେ 'ପେଟେଣ୍ଟ୍ ମେଡ଼ିସିନ୍'ର କଥାବସ୍ତୁ ସଂକ୍ଷିପ୍ତ। ଗୋଟିଏ ଦିନର ମଧ୍ୟାହ୍ନରୁ ଅପରାହ୍ଣ ସୁଦ୍ଧା (ସଂଧ୍ୟା ଗାଢ଼ ହୋଇନାହିଁ) ଗଳ୍ପଟିର ସମସ୍ତ ଘଟଣା ସଂଘଟିତ। ଏହା ସୁଦ୍ଧା ରେବତୀ ଗଳ୍ପ ଭଳି ବହୁପୃଷ୍ଠା ବିଶିଷ୍ଟ ମାତ୍ର ପ୍ରକୃତି ଦୃଷ୍ଟିରୁ ସଂକ୍ଷିପ୍ତ।

ସଂପ୍ରତି କ୍ଷୁଦ୍ରଗଳ୍ପ ମୁହୂର୍ତ୍ତ ମାତ୍ରର କଥାବସ୍ତୁ ଆଧାରରେ ଜୀବନର ବିପୁଳ ରହସ୍ୟ ଉନ୍ମୋଚନରେ ସମର୍ଥ ହେଉଛି।

**ସମତା**—କ୍ଷୁଦ୍ରଗଳ୍ପରେ ସମତା ଅର୍ଥାତ ଉପାଦାନ ଗୁଡ଼ିକର ପାରସ୍ପରିକ ସମାନତା ରହିବା ଆବଶ୍ୟକ। ପାତ୍ର-ପରିବେଶ-ପ୍ରସଙ୍ଗ ତ ପରସ୍ପର ଉପଯୋଗୀ ହେବା ଉଚିତ ସେଥିସହ ଭାଷା-ସଂଳାପ, ସମୟ-କାଳ, ଏବଂ ଉଦ୍ଦେଶ୍ୟ-ଅଭିପ୍ରାୟର

ମଧ୍ୟ ସମତା ରହିବା ଉଚିତ । ଚରିତ୍ର ଉପଯୋଗୀ ଭାଷା, ପ୍ରସଙ୍ଗ ଉପଯୋଗୀ ସଂଳାପ, ସମୟ ଉପଯୋଗୀ ପୋଷାକ-ପରିପାଟୀ, ଉଦ୍ଦେଶ୍ୟ ଉପଯୋଗୀ ବକ୍ତବ୍ୟ ଏବଂ ପରସ୍ପର ସମତା ରକ୍ଷିତ ନହେଲେ ଗୁରୁଚଣ୍ଡାଳ ଦୋଷ ଉତ୍ପନ୍ନ ହୁଏ । ଶିଷ୍ଟ ଚରିତ୍ର ମୁହଁରେ ଗ୍ରାମ୍ୟଭାଷା, ଐତିହାସିକ ପ୍ରସଙ୍ଗରେ ସାମାଜିକ ସଂଳାପ, ଗ୍ରୀଷ୍ମ ଦ୍ୱିପ୍ରହରରେ ପ୍ୟାଣ୍ଟ୍‌କୋଟ୍ କିମ୍ବା ଶୟନକାଳରେ ଯୋତା ପରିଧାନ ଇତ୍ୟାଦି ଅସମ ଅଣାନୁପାତିକ ସମାବେଶ କ୍ଷୁଦ୍ରଗଳ୍ପକୁ ବିଫଳ କରାଏ ।

ଏପରିକି ଚରିତ୍ରବାହୁଲ୍ୟ, ଶବ୍ଦାତିରିକ୍ତତା, ଅନାବଶ୍ୟକ ବର୍ଣ୍ଣନା, ଅନୁପଯୋଗୀ ପ୍ରସଙ୍ଗ, ଅବାସ୍ତବ ଚରିତ୍ର, ଭାଷାଡ଼ମ୍ବର ଇତ୍ୟାଦି ବର୍ଜନୀୟ ।

**ସମୟ**—କ୍ଷୁଦ୍ରଗଳ୍ପର ସମୟ ସଂପର୍କୀୟ ଲକ୍ଷଣ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ।

କ୍ଷୁଦ୍ରଗଳ୍ପରେ ସମୟ ତ୍ରିବିଧ ଦୃଷ୍ଟିରୁ ବିଚାର୍ଯ୍ୟ । i-ପ୍ରକୃତ ସମୟ ii-ଉପଯୋଗ ସମୟ iii-ପଠନ ସମୟ ।

ପ୍ରତ୍ୟେକ' କ୍ଷୁଦ୍ରଗଳ୍ପ ଏକ ପ୍ରକୃତ ଯାନ୍ତ୍ରିକ ସମୟ ବ୍ୟୟିତ ବା ଗର୍ଭିତ କରିଥାଏ । କାରଣ ଯେତେ ସଂକ୍ଷିପ୍ତ ହେଲେବି କ୍ଷୁଦ୍ରଗଳ୍ପର ଏକ ପ୍ରବାହ ଅଂଶ ଥାଏ । ପ୍ରାରମ୍ଭ ଓ ପରିଣତି ମଧ୍ୟରେ ଉପସ୍ଥିତ ସମୟ ହେଉଛି ପ୍ରକୃତ ସମୟ । ଉଦାହରଣତଃ 'ପେଟେଣ୍ଟ ମେଡ଼ିସିନ୍' ଗଳ୍ପର ପ୍ରକୃତ ସମୟ ହେଉଛି ମଧ୍ୟାହ୍ନରୁ ଆସନ୍ନ ସଂଧ୍ୟା । ଗଳ୍ପଟି ମଧ୍ୟାହ୍ନରୁ ଆରମ୍ଭ ହୋଇଛି ଏବଂ ସମାପ୍ତ ହୋଇଚି ଆସନ୍ନ ସଂଧ୍ୟାରେ ।

କିନ୍ତୁ ତହିଁରେ ଲେଖକଙ୍କର ବର୍ଣ୍ଣନା, ଚରିତ୍ରର ସ୍ମୃତି ଏବଂ ସଂଳାପ ଜରିଆରେ ନାୟକଙ୍କ ଛାତ୍ରାବସ୍ଥାରୁ ବୈବାହିକ ଜୀବନର ସେହି ନିର୍ଦ୍ଦିଷ୍ଟ ଦିନ ପର୍ଯ୍ୟନ୍ତ ସମୟ(କାଳ) ଉପଯୋଗ ହୋଇଛି । ଉପଯୋଗ ସମୟ ହିଁ ଚନ୍ଦ୍ରମଣି ଚରିତ୍ରପ୍ରକାଶରେ ସହାୟକ ହୋଇଛି । ଅନ୍ୟଥା ଚନ୍ଦ୍ରମଣି ଯେ ବ୍ୟସନୀ ଓ ବେଶ୍ୟାସକ୍ତ ଏହା ପ୍ରମାଣ କରିବାପାଇଁ କେତେକ ଘଟଣାର ସମାବେଶ ଆବଶ୍ୟକ ପଡ଼ିଥାନ୍ତା । ଏହା ଗଳ୍ପକୁ ଦୀର୍ଘତା, ଘଟଣାବାହୁଲ୍ୟ, ଚରିତ୍ରବାହୁଲ୍ୟ, ଘଟଣାର ପୌନପୁନିକତାରୁ ମୁକ୍ତିଦିଏ । ଉପଯୋଗ ସମୟ ସ୍ୱୟଂ ଦୀର୍ଘ ହେଲେ ହେଁ ତାହା ସୂଚନାରେ ସ୍ଥାପିତ ହେଉଥିବାରୁ ତାହାର କାଳଦୀର୍ଘତା ପାଠକକୁ ଅନୁଭୂତ ହୁଏ ନାହିଁ ।

ସମଗ୍ର ପେଟେଣ୍ଟ୍ ମେଡ଼ିସିନ୍ ଗଳ୍ପକୁ ପଢ଼ିବା ପାଇଁ ଦଶରୁ ପନ୍ଦର ମିନିଟ୍ ସମୟ ଲାଗୁଛି । ଦ୍ରୁତ ଓ ମନ୍ଥର ପାଠକ ଭେଦରେ ଏହା ସମାନ୍ୟ ଊଣା ଓ ଅଧିକ ହୋଇପାରେ ।

କେତେକ ଗଳ୍ପର ପ୍ରକୃତ ସମୟ ମାତ୍ର କେଇଟି ମିନିଟ୍ ହୋଇଥିଲେ ହେଁ ବର୍ଣ୍ଣନାର ମନ୍ଥରତା ଓ ଟିକିନିଖି ରୂପାୟଣ ଯୋଗୁଁ ତାହା ପାଠ କରିବାକୁ ଦୀର୍ଘ ସମୟ ଲାଗିଥାଏ । ମନୋବିଶ୍ଳେଷଣ ଓ ଚେତନା ପ୍ରବାହ ରୀତିରେ ଏପରି ଘଟିଥାଏ । କେତେକ ଗଳ୍ପରେ

ପ୍ରକୃତ ସମୟଠାରୁ ଉପଯୋଗ ସମୟ କେତେବର୍ଷ ବ୍ୟାପୀ ପ୍ରଲମ୍ବିତ ହୋଇଥିଲେ ହେଁ ପଠନ ସମୟ ମାତ୍ର କେତୋଟି ମିନିଟ୍ ହୋଇଥାଏ । ଅତୀତ ଉଦ୍ଭାସନ, ସ୍ମୃତିଚାରଣ ଇତ୍ୟାଦି ଜରିଆରେ ଏହାଘଟେ । କେତେକ ଗଳ୍ପର ପ୍ରକୃତ ସମୟ ଓ ଉପଯୋଗ ସମୟ ସମାନ ହୋଇଥାଏ; ଅର୍ଥାତ୍ ଏକ ଖଣ୍ଡିତ ମୁହୂର୍ତ୍ତର ରୈଖିକ ବର୍ଣ୍ଣନା ହିଁ ଗଳ୍ପ ହୋଇଥାଏ ।

ଏଣୁ କ୍ଷୁଦ୍ରଗଳ୍ପର କ୍ଷୁଦ୍ରତା ତାର ଆକାର ନିର୍ଭର ଯେତେ ନୁହେଁ ସେତେ ତହିଁ ଗର୍ଭିତ ପ୍ରକୃତ ସମୟର ପରିସର ଉପରେ ନିର୍ଭରଶୀଳ । ସମୟ ସହିତ ପ୍ରସଙ୍ଗର ସଂକ୍ଷିପ୍ତି ଓ ଏକକତ୍ୱ କ୍ଷୁଦ୍ରଗଳ୍ପକୁ ପ୍ରକୃତରେ କ୍ଷୁଦ୍ର କରିଥାଏ ।

# ପ୍ରତିଭାତ

## କ୍ଷୁଦ୍ରଗଳ୍ପର ଶୈଳୀ

କ୍ଷୁଦ୍ରଗଳ୍ପ ଏକ ଶୈଳୀପ୍ରଧାନ କଳା । ପ୍ରତ୍ୟେକ କ୍ଷୁଦ୍ରଗଳ୍ପ କୌଣସି ନା କୌଣସି ଦୃଷ୍ଟିରୁ ସ୍ୱତନ୍ତ୍ର ହୋଇଥାଏ । ଏହି ସ୍ୱାତନ୍ତ୍ର୍ୟ ପ୍ରମୁଖ ହୋଇଥିଲେ ତାହା ଏକ ଶୈଳୀ ହୁଏ । କ୍ଷୁଦ୍ରଗଳ୍ପକୁ ଉପସ୍ଥାପିତ କରିବାପାଇଁ ଯେଉଁ କେତୋଟି ମୁଖ୍ୟ ଶୈଳୀ ବ୍ୟବହୃତ ତାହାକୁ ନିମ୍ନମତେ ଦର୍ଶାଯାଇପାରେ ।

i - ଗୀତିଧର୍ମୀ
ii - ନାଟ୍ୟଧର୍ମୀ
iii - ପତ୍ରଧର୍ମୀ
iv - ସମ୍ବାଦଧର୍ମୀ
v - ପ୍ରବନ୍ଧଧର୍ମୀ,
vi - ଡ଼ାଇରୀ ଧର୍ମୀ
vii - ରମ୍ୟରଚନାଧର୍ମୀ
viii - ଆତ୍ମକଥନଧର୍ମୀ
ix - ଅନୁବର୍ତ୍ତନଧର୍ମୀ
x - ଚେତନାପ୍ରବାହଧର୍ମୀ
xi - ବର୍ଣ୍ଣନାଧର୍ମୀ
xii - ମନୋବିଶ୍ଳେଷଣଧର୍ମୀ
xiii - ରୂପକଧର୍ମୀ
xiv - ସଙ୍କେତଧର୍ମୀ ।

ଲକ୍ଷଣୀୟ ଯେ ସାହିତ୍ୟର ବିଭିନ୍ନ ରୂପକୁ କ୍ଷୁଦ୍ରଗଳ୍ପ ଅଙ୍ଗିଭୂତ କରିଛି । ସେହି ରୂପ ଓ ରୀତିକୁ କେତେବେଳେ ଆଂଶିକ ଓ କେତେବେଳେ ପୂର୍ଣ୍ଣରୂପେ ପ୍ରୟୋଗକରି ଗଳ୍ପ ରଚିତ ହୋଇଛି । ତଦ୍ଭିନ୍ନ ଲିଖନଧାରାର ସମସ୍ତ 'ପ୍ରକାର' ଗଳ୍ପରେ ପ୍ରଯୁକ୍ତ । ଏଗୁଡ଼ିକ

ମଧ୍ୟ ପୂର୍ଣ୍ଣତଃ ବା ଅଂଶତଃ ଅନୁସୃତ ହୋଇ ଗଳ୍ପଟିକୁ ସେହି ଧାରା ବିଶିଷ୍ଟ ବୋଲି ପରିଚିତ କରାଏ । ଅନ୍ୟଥା ବର୍ଣ୍ଣନାଧର୍ମ ହିଁ ଗଳ୍ପର ସ୍ୱାଭାବିକ ଓ ବହୁବ୍ୟବହୃତ ଧାରା । ସର୍ବୋପରି ରହିଛି ମନୋବିଶ୍ଳେଷଣ ଧର୍ମ ଓ ଚେତନାପ୍ରବାହ ଧର୍ମ । ଏହା କିୟତ ପରିମାଣରେ ଗଳ୍ପ ଶୈଳୀରେ ଅଭିନବତ୍ୱ ସୃଷ୍ଟି କରିଛି ।

## ୧-ଗୀତିଧର୍ମୀ ଗଳ୍ପ :

କେତେକ ଗଳ୍ପର ଭାଷାରେ କବିତାନୁଗ ସାରଲ୍ୟ, ତରଳ ପ୍ରବାହଧର୍ମୀତା, ଲଘୁ ସଞ୍ଚରଣ କ୍ଷମତା ଓ ଶବ୍ଦପଦର ନମନୀୟତା ପରିଦୃଷ୍ଟ ହୋଇଥାଏ । । ତାହା ପାଠକଲେ ପାଠକ ଖୁବ୍ ଆବିଷ୍ଟ ହୋଇଯାଏ । ଏଥିରେ କ୍ରିୟାପଦର ଧ୍ୱନିସାମ୍ୟ ପୁନଃପୁନଃ ରକ୍ଷିତ ହୋଇ ଅନୁଚ୍ଛେଦ ବ୍ୟାପୀ ଲେଖାଯାଇଥାଏ । ଫଳରେ ଝରଣାର ଝରତୁଲ୍ୟ ବାକ୍ୟସବୁ ପ୍ରବାହିତ ହୋଇଯାଉଥିବାର ପ୍ରତୀତ ହୁଏ । ପୁଣି କେତେକ ଗଳ୍ପର ଲିଖିତ ରୂପ କବିତା ପରି (ଧାଡ଼ିର ଅକ୍ଷର ସଂଖ୍ୟା ବିସମ) ହୋଇଥାଏ ।

ଏ ପ୍ରକାର ଗଳ୍ପକୁ ଗୀତିଧର୍ମୀ ଗଳ୍ପ କୁହାଯାଏ । ଏଥିରେ ପ୍ରେମ (ବିରହ-ମିଳନ) ବିଷୟକ ପ୍ରସଂଗ ସହିତ ଶୋକ ଓ ଶୋଚନା ପ୍ରସଂଗ ପ୍ରାୟତଃ ରୂପାୟିତ ହୋଇଥାଏ । ମନସ୍ତାତ୍ତ୍ୱିକ ଗଳ୍ପ ଗୁଡ଼ିକରେ ଅବଚେତନର ଚିନ୍ତାପ୍ରବାହ ପ୍ରକାଶ କଲାବେଳେ ଏହି ରୀତି ମଧ୍ୟ ଅନୁସୃତ ହୋଇଥାଏ । ଉଭୟ କବିତା ଓ ଗଳ୍ପ ଲେଖୁଥିବା ଲେଖକର ଗଳ୍ପରେ ଏହି ରୀତି ପୂର୍ଣ୍ଣତଃ ନହେଲେ ଅଂଶତଃ ସବୁବେଳେ ପ୍ରଯୁକ୍ତ ହୋଇଥାଏ । ବସ୍ତୁତଃ ଏହା ଏକ ଲେଖକୀୟ ସଫଳତା । କାରଣ ଗଦ୍ୟ ପାଠକଲେ କବିତାର ଅନୁଭବ ସୃଷ୍ଟିହେବା ଭଲଗଦ୍ୟର ଲକ୍ଷଣ ବୋଲି କୁହାଯାଇଛି ।

ଏହି ରୀତିରେ ଶୃଙ୍ଗାର ଓ କରୁଣ ରସ; ଫ୍ରୟେଡ଼ୀୟ ଦର୍ଶନ; ପ୍ରେମ-ପ୍ରଣୟ, ବିରହ-ମିଳନ ଆଦି ଭାବ ଏବଂ ବୈୟକ୍ତିକ ବିଷୟ ଉତ୍ତମରୂପେ ପ୍ରକାଶିତ ହୋଇପାରେ ।

## ୨-ନାଟ୍ୟଧର୍ମୀ ଗଳ୍ପ :

କେତେକ ଗଳ୍ପରେ ନାଟକ ସୁଲଭ ଆକସ୍ମିକତା, ଦ୍ୱନ୍ଦ୍ୱ ମୁଖ୍ୟତା, ସଂଳାପ ସନ୍ନିବେଶକରଣ, ଦୃଶ୍ୟ ସମବାୟ ଇତ୍ୟାଦି କରାଯାଇଥାଏ । ଗଳ୍ପ ଆରମ୍ଭରେ ମୁଖବନ୍ଧ, ସୂଚନା, ଦୃଶ୍ୟ ବା ଘଟଣାର ଉପସ୍ଥାପନା କରାଯାଇଥାଏ । ସମୁଦାୟ ଗଳ୍ପ ନାଟକ ଭଳି କେତୋଟି ଦୃଶ୍ୟରେ ବିଭକ୍ତ ହୋଇଥାଏ । ପ୍ରତି ଦୃଶ୍ୟାଂଶ ଚରିତ୍ର ମାନଙ୍କ ସଂଳାପ ଦ୍ୱାରା ପ୍ରକଟିତ ହୋଇଥାଏ । ମୋଟ ଉପରେ ଗପଟି ଏକାଙ୍କିକା ପରି ଦିଶୁଥାଏ ମାତ୍ର ପ୍ରକୃତରେ ଏକ ଗଳ୍ପ ହିଁ ହୋଇଥାଏ ।

ଏଭଳି ଗଳ୍ପକୁ ନାଟ୍ୟଧର୍ମୀ ଗଳ୍ପ କୁହାଯାଏ । ଏଥିରେ ସାମାଜିକ ପାରିବାରିକ ଦ୍ୱନ୍ଦ୍ୱ-ବିରୋଧ, ବ୍ୟକ୍ତିବ୍ୟକ୍ତିର ମତାନୈକ୍ୟ, ଯୁକ୍ତି ପ୍ରତିଯୁକ୍ତି, ପ୍ରଶ୍ନୋତ୍ତର ଇତ୍ୟାଦି କ୍ରିୟା ଦର୍ଶାଇବା ସହଜ ହୋଇଥାଏ । ପ୍ରେମ, ଯୁଦ୍ଧ, କଳହ ଇତ୍ୟାଦି ପ୍ରସଙ୍ଗ; ଶୃଙ୍ଗାର, ବୀର, ବିଭତ୍ସ, କରୁଣ ଆଦି ରସ ଓ ଘଟଣା ପ୍ରଧାନ କଥାଭାଗ କ୍ଷେତ୍ରରେ ନାଟ୍ୟଧର୍ମୀ ରୀତି ଅନୁସୃତ ହୁଏ । ଏହା ପୂର୍ଣ୍ଣତଃ କିମ୍ବା ଅଂଶତଃ ହୋଇପାରେ ।

ଏଭଳି ଗଳ୍ପର ପ୍ରଭାବଶାଳୀ ସଂଳାପ ଓ ଦୃଶ୍ୟ ପାଠକର ସ୍ମରଣ ରହିଯାଉଥିବାରୁ ପାଠକ ଏହାକୁ ପସନ୍ଦ କରିଥାଏ ।

## ୩-ପତ୍ରଧର୍ମୀ ଗଳ୍ପ :

କେତେକ ଗଳ୍ପ ପତ୍ରଟିଏ ମାତ୍ର କିମ୍ବା କେତୋଟି ବିନିମୟିତ ପତ୍ରର ସମାହାର ହୋଇଥାଏ । କେତେକ ଗଳ୍ପର ମର୍ମ ଉଦ୍‌ଘାଟନ, ଦ୍ୱନ୍ଦ୍ୱମୟ ମୁହୂର୍ତ୍ତ ସୃଷ୍ଟି, ଚରମ ବିନ୍ଦୁରେ ଉପନୀତ ହେବା ଇତ୍ୟାଦି ବ୍ୟାପାର ପତ୍ରଟିଏ ମାଧମରେ ଘଟିଥାଏ । ଗଳ୍ପଭିତରେ ପତ୍ର ସମାବେଶକୁ ପତ୍ରଧର୍ମୀ ଗଳ୍ପ କୁହାଯାଏ ।

ଏଥିରେ ଚରିତ୍ର ଚରିତ୍ର ଭିତରର ଅସହଜ ସଂପର୍କ ସୁଧାର, ପ୍ରେମ ବିରହ-ସ୍ୱୀକାରୋକ୍ତି-ଇଚ୍ଛାପତ୍ର-ଯାଚନା-ଧମକ-ଆଦେଶ-ନିର୍ଦ୍ଦେଶ ପ୍ରକାଶ ଏବଂ ଦୂରାବସ୍ଥିତ ଦୁଇ ଚରିତ୍ରଙ୍କ ଏକ ଘଟଣାପ୍ରତି ପ୍ରତିକ୍ରିୟା ଦର୍ଶାଇବା ସହଜ ତଥା ସଫଳ ହୋଇଥାଏ ।

ଶାନ୍ତି, ସହାବସ୍ଥାନ, ପ୍ରେମ, ବିରହ-ମିଳନ ଇତ୍ୟାଦି ପ୍ରସଙ୍ଗ; ହାସ୍ୟ-ଶାନ୍ତ-କରୁଣ ଆଦି ରସ ଏବଂ ଘଟଣା ଓ ଚରିତ୍ର ପ୍ରଧାନ କଥାଭାଗ ପ୍ରକାଶ କରିବାରେ ପତ୍ରଧର୍ମୀ ଗଳ୍ପ ସହାୟକ ହୁଏ ।

ଏଭଳି ଗଳ୍ପର ପ୍ରଭାବଶାଳୀ ସମ୍ବୋଧନ, ମର୍ମସ୍ପର୍ଶୀ ଆବେଦନ ପାଠକ ପ୍ରାଣରେ ବେଶ୍ ଆବେଶ ସୃଷ୍ଟିକରେ ।

## ୪-ସମ୍ବାଦଧର୍ମୀ ଗଳ୍ପ :

କେତେକ ଗଳ୍ପରେ ସମ୍ବାଦପତ୍ର ସୁଲଭ ବିଜ୍ଞାପନ, ସମ୍ବାଦ, ଘୋଷଣାନାମା, ସୂଚନା, ସ୍ତମ୍ଭଲେଖ ଏବଂ ସମ୍ପାଦକୀୟ ଭଳି ଲେଖା ଗର୍ଭସ୍ଥ ହୋଇଥାଏ । ନିରୁଦ୍ଦିଷ୍ଟ ବ୍ୟକ୍ତି, ନିଯୁକ୍ତି ବିଜ୍ଞାପନ, ବୈବାହିକ, ବିକ୍ରୀ-କ୍ରୟ, ବଜାରଦର ଇତ୍ୟାଦି ସଂପର୍କରେ ସୂଚନା ଗଳ୍ପ ପରିସରରେ ଆବଶ୍ୟକ ହେଉଥିଲେ ତାହା ସମ୍ବାଦପତ୍ର ସୁଲଭ ରୀତିରେ ଖଚିତ କରିଦିଆଯାଏ । ଏହା ପ୍ରାମାଣିକତା ସୃଷ୍ଟି କରେ । ଏ ପ୍ରକାର ଗଳ୍ପକୁ ସମ୍ବାଦଧର୍ମୀ ଗଳ୍ପ କୁହାଯାଏ ।

ଏଭଳି ଗଳ୍ପରେ ପାରିବେଶିକ ଓ ପାରିସ୍ଥିତିକ ଚିତ୍ର ବେଶ୍ ଉଙ୍କୁଟିପାରେ । ସ୍ଥାନୀୟ ବା କ୍ଷେତ୍ରୀୟ ଏବଂ ଆଞ୍ଚଳିକ ଗଳ୍ପ କ୍ଷେତ୍ରରେ ଏହା ବେଶୀ ଉପଯୋଗୀ । ଦୂରାନ୍ତରେ

ଥିବା ପାତ୍ରର ପାରିସ୍ଥିତିକ ଅବସ୍ଥା ଦର୍ଶାଇ ଚରିତ୍ରପ୍ରତି ଅନ୍ୟ ଚରିତ୍ର ଏବଂ ପାଠକର ପ୍ରତିକ୍ରିୟା ସୃଷ୍ଟି କରାଇବା ଏଭଳି ଗଳ୍ପରେ ସମ୍ଭବ ହୋଇଥାଏ ।

ବାସ୍ତବବାଦୀ, କରୁଣ ରସାତ୍ମକ ଏବଂ ଆଞ୍ଚଳିକ ଗଳ୍ପ କ୍ଷେତ୍ରରେ ଏହି ରୀତି ବେଶ୍ ପ୍ରଯୁକ୍ତ ହୁଏ ।

## ୫-ପ୍ରବନ୍ଧଧର୍ମୀ ଗଳ୍ପ :

କେତେକ ଗଳ୍ପରେ ପ୍ରବନ୍ଧ ଭଳି ଉପକ୍ରମ, ବିଷୟ ବିଶ୍ଳେଷଣ, ଉଦାହରଣ ଓ ଉପସଂହାର ପ୍ରଭୃତି କ୍ରମରେ ଉପଶିରୋନାମ (ସ୍ୱତନ୍ତ୍ର ଶିରୋନାମ ମଧ୍ୟ ହୋଇପାରେ) ପ୍ରଦାନ କରାଯାଇଥାଏ । ଏଥିରେ ପ୍ରବନ୍ଧର ବିଷୟବସ୍ତୁ ସଂଗଠନ ପରି ଗଳ୍ପର କଥାଭାଗ ସୁସଂଗଠିତ, ଯୁକ୍ତିନିଷ୍ଠ ଓ ଶୃଙ୍ଖଳିତ ହୋଇଥାଏ । ଏପ୍ରକାର ଗଳ୍ପକୁ ପ୍ରବନ୍ଧଧର୍ମୀ ଗଳ୍ପ କୁହାଯାଏ ।

ଏଭଳି ଗଳ୍ପରେ ମନସ୍ତାତ୍ତ୍ୱିକ ଚିନ୍ତାଧାରା, ବାସ୍ତବବାଦୀ ଘଟଣା ଓ ପ୍ରସଙ୍ଗ ପ୍ରକାଶିତ ହୋଇଥାଏ । ଉପଶିରୋନାମଗୁଡ଼ିକ ମାର୍ଫତରେ ଅନୁଚ୍ଛେଦ ବା ପରିଚ୍ଛେଦର ସୂଚନା ମିଳୁଥିବା ଦୃଷ୍ଟିରୁ ପାଠକ ଗଳ୍ପପ୍ରତି ଆକର୍ଷିତ ହୁଏ ଯେମିତି ଏହା ଫଳରେ ଗଳ୍ପ ରହସ୍ୟ ରହୁନଥିବାରୁ ପାଠକ ସ୍ଥଳବିଶେଷରେ ଆଗ୍ରହ ଓ ଏକାଗ୍ରତା ମଧ୍ୟ ହରାଏ ସେମିତି । ଗଳ୍ପଟି ବିବରଣାତ୍ମକ ହୋଇଯାଏ ।

ବାସ୍ତବବାଦୀ, ସ୍ୱୈରବାଦୀ, ଫ୍ରୟେଡ୍‌ବାଦୀ ଭାବଧାରା; କରୁଣ, ଶାନ୍ତ ରସ ଏବଂ ବୈୟକ୍ତିକ ପ୍ରସଙ୍ଗ କ୍ଷେତ୍ରରେ ଏହି ଧାରା ପ୍ରୟୋଗର ସୁଯୋଗ ପ୍ରଶସ୍ତ ।

## ୬-ଡ଼ାଇରୀଧର୍ମୀ ଗଳ୍ପ :

କେତେକ ଗଳ୍ପ ବ୍ୟକ୍ତିର ବ୍ୟକ୍ତିଗତ ଡ଼ାଇରୀ ପରି ଆତ୍ମସଂଳାପ ରୀତିରେ ଗୋଟିଏ ତାରିଖ ବା ବାର ପାଇଁ ସ୍ୱତନ୍ତ୍ର ବକ୍ତବ୍ୟ ରଖି ଲିଖିତ ହୋଇଥାଏ । ଏଥିରେ ଡ଼ାଇରୀର ଗୋପନୀୟତା, ବ୍ୟକ୍ତିଗତତା ଏବଂ ସଂକ୍ଷିପ୍ତତା ରହିଥାଏ । ସ୍ୱୀକାରୋକ୍ତି, ଅନୁତାପ, ଯୋଜନା, ପ୍ରସ୍ତାବ, ସିଦ୍ଧାନ୍ତ ଆଦି ପ୍ରକାଶ କରିବା କ୍ଷେତ୍ରରେ ଚରିତ୍ରକୁ ସ୍ୱାଚ୍ଛନ୍ଦ୍ୟ ଦେବାପାଇଁ ତାର ଡ଼ାଇରୀର କିୟଦଂଶ ଏଥିରେ ସଂଯୋଜିତ ହୁଏ । ତାହା ମୁଖ୍ୟ ଚରିତ୍ରର ଡ଼ାଇରୀ ହୋଇଥାଏ; ବେଳେବେଳେ ଗୌଣ ଚରିତ୍ରର ଡ଼ାଇରୀ ମଧ୍ୟ ଅଙ୍ଗୀଭୂତ ହୁଏ । ଏଭଳି ଗଳ୍ପକୁ ଡ଼ାଇରୀଧର୍ମୀ ଗଳ୍ପ କୁହାଯାଏ ।

ଏଥିରେ ସଂପୂର୍ଣ୍ଣତଃ ଡ଼ାଇରୀ ଉଦ୍ଧାର କିମ୍ବା ପରିଣତିରେ କେବଳ ଡ଼ାଇରୀ ଉଦ୍ଧାର କରାଯାଇପାରେ । ପ୍ରାମାଣିକତା ପାଇଁ କ୍ରମାନ୍ୱୟରେ ତାରିଖ, ବାର, ମାସର ନାମ, ବର୍ଷର ଅଙ୍କ ଉଲ୍ଲେଖ କରାଯାଇଥାଏ । ଲେଖକ ଚରିତ୍ରର ମାନସିକତାର ଗ୍ରାଫ୍ ଆଙ୍କିବା

ପାଇଁ ଏହି ରୀତି ବ୍ୟବହାର କରିଥାନ୍ତି ।

ଏଭଳି ଗଳ୍ପରେ ମନସ୍ତାତ୍ତ୍ୱିକ, ଘାଟଣିକ କଥାଭାଗ ପ୍ରକଟର ସୁନ୍ଦର ସୁଯୋଗ ଥାଏ । ଅଜ୍ଞାତ ଚରିତ୍ରର ରୂପ ଉଦ୍ଭାସନ ପାଇଁ ଏହା ଜରୁରୀ ହୋଇଥାଏ । ଏଥିରେ ଶୃଙ୍ଗାର ଓ କରୁଣ ରସ ଉଦ୍‌ବୋଧନ ଘଟିଥାଏ । ମନସ୍ତାତ୍ତ୍ୱିକ ଓ ଘଟଣା ପ୍ରଧାନ କଥାଭାଗ ଏଥିରେ ପରିସ୍ଫୁଟ ହୁଏ । ଅଭିଯାନ ମୂଳକ, ଜୀବନୀମୂଳକ, ପର୍ଯ୍ୟଟନ ଭିତ୍ତିକ ଏବଂ ରହସ୍ୟଧର୍ମୀ ଗଳ୍ପରେ ଏହି ରୀତି ଅନୁସୃତ ହୁଏ ।

## ୭-ରମ୍ୟରଚନାଧର୍ମୀ ଗଳ୍ପ :

କେତେକ ଗଳ୍ପ ରମ୍ୟରଚନା ପରି ହାସ୍ୟରସାତ୍ମକ, ଲଘୁ, ଗୀତିମୟ ଭାଷା ଯୁକ୍ତ ଏବଂ ଅଗଭୀର ସମସ୍ୟା ଭିତ୍ତିକ ହୋଇଥାଏ । ଏଥିରେ ରମ୍ୟରଚନାର ବିନୋଦ ଗୁଣ ବେଶ୍ ରକ୍ଷିତ ହୋଇଥାଏ । ଏହା ଆକାରରେ ସଂକ୍ଷିପ୍ତ ହୋଇଥାଏ । ଏଭଳି ଗଳ୍ପକୁ ରମ୍ୟରଚନାଧର୍ମୀ ଗଳ୍ପ କୁହାଯାଏ ।

ଏଥିରେ ଏକ କଥାଭାଗ ଥାଇପାରେ ନତୁବା ଏକ ମାନସିକତା କିମ୍ବା ଘଟଣାର ବୟାନ ମାତ୍ର କରାଯାଇପାରେ । ଚରିତ୍ର ପ୍ରତ୍ୟକ୍ଷ ହୋଇପାରନ୍ତି ନତୁବା ଅପ୍ରତ୍ୟକ୍ଷ ରହିପାରନ୍ତି । ହାସ୍ୟ ପରିବେଷଣ ଏହାର ପ୍ରମୁଖ ଲକ୍ଷ୍ୟ ହୋଇଥାଏ । ଏହାର ଭାଷା ଗୀତିମୟ, ପ୍ରବାହଧର୍ମୀ ଏବଂ ବେଳେବେଳେ ଅଳଙ୍କାରଯୁକ୍ତ ହୋଇଥାଏ ।

ଏଭଳି ଗଳ୍ପ କାଳ୍ପନିକ ବିଷୟ, ଉଦ୍ଭଟ ଚେତନା, ହାସ୍ୟରସ ଏବଂ ଭାବପ୍ରାଧାନ୍ୟ ଭିତ୍ତିରେ ବେଶ୍ ଗଠିତ ହୋଇଥାଏ ।

## ୮-ଆତ୍ମକଥନଧର୍ମୀ ଗଳ୍ପ :

କେତେକ ଗଳ୍ପରେ ସମୁଦାୟ ବୃତ୍ତାନ୍ତଟିକୁ ଜଣେ ଚରିତ୍ର ନିଜମୁହଁରେ କହିଯାଉଥିବାର ଦେଖିବାକୁ ମିଳେ । ତହିଁରେ 'ମୁଁ', 'ମୋର', ଶବ୍ଦ ବାରମ୍ବାର ପ୍ରୟୋଗ ହୋଇଥାଏ । ସମୁଦାୟ ଗଳ୍ପ ସେହି ଚରିତ୍ରର ମାନସିକତା ଓ ଦୃଷ୍ଟିକୋଣରୁ ଲିଖିତ ହୋଇଥାଏ । ସେହି ବର୍ଣ୍ଣନାକାରୀ ଚରିତ୍ରଟି ହେଇଥାଏ ପ୍ରତ୍ୟକ୍ଷ ଅନ୍ୟ ସବୁ ଚରିତ୍ର ହୋଇଥାନ୍ତି ପରୋକ୍ଷ ବର୍ଣ୍ଣିତ । ଏପ୍ରକାର ଗଳ୍ପକୁ ଆତ୍ମକଥନଧର୍ମୀ ଗଳ୍ପ କୁହାଯାଏ ।

ଏଭଳି ଗଳ୍ପ ଚରିତ୍ରପ୍ରଧାନ ହୁଏ କିନ୍ତୁ ଅନ୍ୟ ଚରିତ୍ର ପରୋକ୍ଷ ଚିତ୍ରିତ ହେଉଥିବାରୁ ପ୍ରଧାନ ଚରିତ୍ର ଦୃଷ୍ଟିରେ ଗଳ୍ପଚରିତ୍ର ଓ ଗଳ୍ପଘଟଣାର ବିଶ୍ଳେଷଣ ହିଁ ଏଥିରେ ମୁଖ୍ୟ ହୋଇଥାଏ । ଏଣୁ ଏହା ଚରିତ୍ରପ୍ରଧାନ ଅଥଚ ବର୍ଣ୍ଣନାଧର୍ମୀ ଗଳ୍ପ । ଏହା ପରିମିତ ଆକାରର ହୋଇଥାଏ; କଦାଚିତ ଦୀର୍ଘାୟତନ ବିଶିଷ୍ଟ ହୋଇଥାଏ । ଅଧିକାଂଶ ମିନି ଓ ଆଭାସଗଳ୍ପ ଆତ୍ମକଥନଧର୍ମୀ ହୋଇଥାଏ ।

ଏଥିରେ ପ୍ରେମ, ବିରହ, ବିଦ୍ରୋହ, ଅନୁତାପ ଆଦି ଭାବ ମୁଖ୍ୟତଃ ପ୍ରକାଶ ପାଇଥାଏ । ସ୍ୱୈରବାଦ, ସ୍ୱଚ୍ଛନ୍ଦତାବାଦ, ଫ୍ରୟେଡ଼୍‌ବାଦ ଆଦି ଦର୍ଶନ; ଶୃଙ୍ଗାର-କରୁଣ-ଶାନ୍ତ ରସ; ଅନୁଭୂତି, ଉପଲବ୍ଧି ଓ ଆତ୍ମକଥା ଆଦି ବିଷୟ ଏହି ରୀତିରେ ସହଜ ପ୍ରସ୍ଫୁଟିତ ହୁଏ ।

ଏହା ଲେଖକର ଆତ୍ମକଥା (ନିଜ ଉପଲବ୍ଧିର ସତ୍ୟପାଠ) ଭଳି ମନେ ହେଉଥିବାରୁ ପାଠକର ବିଶ୍ୱସନୀୟ ହୋଇଥାଏ ।

## ୯-ଅନୁବର୍ତ୍ତନଧର୍ମୀ ଗଳ୍ପ :

କେତେକ ଗଳ୍ପ ପାଠକଲେ ତହିଁରେ ଆଉ ଏକ ଗଳ୍ପର ଉପସ୍ଥିତି ଅନୁଭୂତ ହୁଏ । ପାଠକର ପରିଚିତ ଲୋକକଥା, ପୁରାଣକଥା, ଇତିହାସକଥାଗୁଡ଼ିକ ପ୍ରାୟତଃ ଏହି ପର୍ଯ୍ୟାୟରେ ଉପଯୋଗ ହୋଇଥାନ୍ତି । କେତେକ ସ୍ଥଳରେ ପୂର୍ବରଚିତ-ସଂକଳିତ ଗଳ୍ପ ଯଥା; ଲୋକଗଳ୍ପ, ପୌରାଣିକ ଗଳ୍ପ ଓ ସଂସ୍କୃତ ସାହିତ୍ୟର ବିଶିଷ୍ଟ ଗଳ୍ପ ସଂକଳନ ଯଥା; - ଗାଥା ସପ୍ତଶତୀ, ଶୁକସପ୍ତତି, ଦଶକୁମାର ଚରିତ, ଦଶକୁମାରୀ ଚରିତ ପ୍ରଭୃତି ଏବଂ ବେତାଳ ପଞ୍ଚବିଂଶତି, ସିଂହାସନ ଦ୍ୱାତ୍ରିଂଶିକା କଥା ସମେତ ଜାତକ ଗଳ୍ପଗୁଡ଼ିକରୁ ନିର୍ବାଚିତ ଗଳ୍ପ କୌଣସି ଗଳ୍ପରେ ପୁନଃ ପ୍ରୟୋଗ ହୋଇଥାଏ । ଏଗୁଡ଼ିକୁ ଅନୁବର୍ତ୍ତନଧର୍ମୀ ଗଳ୍ପ କୁହାଯାଏ ।

ଏଥିରେ ମୂଳ ଗଳ୍ପଟି ସମଗ୍ରତଃ, ଆଂଶିକ, ସୂଚନାତ୍ମକ ଏବଂ ବେଳେବେଳେ କେବଳ ଚରିତ୍ର ଏପରିକି ଗଳ୍ପଟିର 'ନାମ' ମାତ୍ର ଅନୁବର୍ତ୍ତିତ ହୋଇପାରେ । ମୂଳଗଳ୍ପକୁ ଭିତ୍ତିକରି ରଚିତ ନୂତନ ଗଳ୍ପଟି ଅଧିକ ବିନ୍ୟାସ ବା ବ୍ୟାଖ୍ୟା ଆବଶ୍ୟକ କରେ ନାହିଁ । କାରଣ ମୂଳ ଗଳ୍ପର ଯେଉଁ ଆବେଦନ ତାହା ହିଁ ନୂତନ ଗଳ୍ପର ଆବେଦନ - ଉଦ୍ଦେଶ୍ୟ ଓ ହେତୁ ନିରୂପଣ କରିଥାଏ ।

ଏଭଳି ଗଳ୍ପ ବିଷୟପ୍ରଧାନ ହୁଏ କିନ୍ତୁ କେତେକ ସ୍ଥଳରେ ଚରିତ୍ରପ୍ରଧାନ ହୋଇପାରେ । ଏହା ଦୀର୍ଘ ବା ସଂକ୍ଷିପ୍ତ ହୋଇପାରେ । ତାହା ନିର୍ଭର କରିଥାଏ ଅନୁବର୍ତ୍ତିତ ଗଳ୍ପର ଗୃହୀତ ପ୍ରସଙ୍ଗର ଆକାର ଉପରେ ।

ଏ ପ୍ରକାର ଗଳ୍ପରେ ଲେଖକର ପ୍ରାଚୀନ କଥା-କାହାଣୀ ଅଧ୍ୟୟନର ବ୍ୟାପକତା ଏବଂ ଅବବୋଧର ତୀକ୍ଷ୍ଣତା ପ୍ରମାଣିତ ହୁଏ । ପୁନଶ୍ଚ ଏତଦ୍ୱାରା ସାଂପ୍ରତିକ ସମାଜ-ରାଜନୀତିର ଅନୁଶୀଳନ ଏବଂ ପ୍ରାଚୀନ ଗଳ୍ପ ଜରିଆରେ ତାର ଉପସ୍ଥାପନରେ ଲେଖକର ଦକ୍ଷତା ସାବ୍ୟସ୍ତ ହୁଏ ।

ଏହା ପ୍ରାଚୀନ ଗଳ୍ପ ପ୍ରସଙ୍ଗ ବା ଚରିତ୍ର ବା ଆବେଦନ ପ୍ରତି ଲେଖକର ମୁଗ୍ଧ ଭାବାବେଶରୁ ଏବଂ ସ୍ୱ-କଳ୍ପିତ କାହାଣୀକୁ ବୁନିଆଦୀ ଦେବାର ଉଦ୍ଦେଶ୍ୟରୁ ରଚିତ

ହୋଇଥାଏ । ବେଳେବେଳେ ମୂଳକାହାଣୀର ବିସ୍ତାର କିମ୍ବା ସଙ୍କୋଚ, ଚରିତ୍ରର ବିକାଶ କିମ୍ବା ବିନ୍ୟାସ ଏବଂ ସାଂପ୍ରତିକ ସମାଜ ଭୂମିରେ ତା'ର ସମ୍ଭାବ୍ୟ ରୂପ ଅନୁବର୍ତ୍ତନଧର୍ମୀ ଗଳ୍ପରେ ପ୍ରତ୍ୟକ୍ଷୀଭୂତ ହୁଏ ।

ଏଥିରେ ସମସ୍ତ ପ୍ରକାର ବିଷୟ, ରସ ଓ ଭାବ ଅଙ୍ଗୀଭୂତ ହୋଇପାରେ ।

ପାଠକର ମନରେ ମୂଳଗଳ୍ପର ସ୍ଥାୟୀ ଆବେଦନ ଏହି ଗଳ୍ପ ମାଧ୍ୟମରେ ପୁନଃ ସ୍ଫୁରିତ ହେଉଥିବାରୁ (ପ୍ରୟୋଗରେ ପରିବର୍ତ୍ତିତ ହୋଇଥିଲେ ମଧ୍ୟ) ପାଠକ ଏ ପ୍ରକାର ଗଳ୍ପକୁ ଖୁବ୍ ଆଦର କରିଥାଏ ।

## ୧୦-ଚେତନାପ୍ରବାହଧର୍ମୀ ଗଳ୍ପ :

କୌଣସି କୌଣସି ଗଳ୍ପ ମୁଖ୍ୟପାତ୍ରର ଚିନ୍ତାପ୍ରବାହକୁ ଲିପିବଦ୍ଧ କରି ଚାଲିଥାଏ । ତହିଁରେ ଲେଖକର ବର୍ଣ୍ଣନାକାରୀ ସୁଲଭ ଭୂମିକା ନଥାଏ କିମ୍ବା ସେ ବାଖ୍ୟାକାର ଭଳି ପାଠକକୁ ଘଟଣାଟି ସଂପର୍କରେ ବୁଝାଇ ବସିନଥାନ୍ତି । ଗଳ୍ପଟି ଚରିତ୍ରର ଆତ୍ମସଂଳାପ ରୀତିରେ ଅର୍ଥାତ ଚରିତ୍ରଟି ନିଜେ ତା ଅନୁଭୂତି କହିଯାଉଥିବା ପରି ରଚିତ ହୋଇଥାଏ । ଗଳ୍ପଟି ଅସଲରେ ଅଳ୍ପ ସମୟରେ ଘଟୁଥାଏ ମାତ୍ର ବହୁ ଦୀର୍ଘକାଳର ପ୍ରସଙ୍ଗ ତହିଁରେ ଅନ୍ତର୍ଭୁକ୍ତ ହୋଇଥାଏ । ଏଭଳି ଗଳ୍ପକୁ ଚେତନାପ୍ରବାହଧର୍ମୀ ଗଳ୍ପ କୁହାଯାଏ ।

ଏଥିରେ ଚରିତ୍ରର ସଂଖ୍ୟା ଅତ୍ୟଳ୍ପ ଏପରିକି ବେଳେବେଳେ ଏକମାତ୍ର ହୋଇଥାଏ । ତାହା ବ୍ୟତୀତ ଜଣେ ଦୁଇଜଣ ପରୋକ୍ଷ ଚରିତ୍ର ଏପ୍ରକାର ଗଳ୍ପରେ ରହିପାରନ୍ତି । ଏପ୍ରକାର ଗଳ୍ପ ବର୍ତ୍ତମାନରେ ସାମାନ୍ୟ ଭାବେ ଏବଂ ଅତୀତକାଳରେ ବିଶେଷ ଭାବେ ବିନ୍ୟସ୍ତ ହୋଇଥାଏ । କୌଣସି ଘଟଣା ଓ ଚରିତ୍ର ସଂପର୍କରେ ମୁଖ୍ୟ ଚରିତ୍ରର ଚିନ୍ତା ଅତୀତ ଉଦ୍ଭାସନ ରୀତିରେ ପ୍ରକଟିତ ହେବା ଓ ତଦ୍ୱାରା ଘଟଣା ବା ଚରିତ୍ର ପ୍ରତି ପାଠକର ଏକ ଧାରଣା ସୃଷ୍ଟି ହେବା ଏହି ଗଳ୍ପଶୈଳୀର ଉଦ୍ଦେଶ୍ୟ । ଏଭଳି ଗଳ୍ପ ଚରିତ୍ରପ୍ରଧାନ ହୋଇଥାଏ ।

ଏହି ରୀତିରେ ପ୍ରେମ-ପ୍ରଣୟ, ଅପରାଧ, ଅପମାନ, ଅଭିଯାନ ଆଦି ବିଷୟ; ଶୃଙ୍ଗାର, ବିଭତ୍ସ, ଭୟାନକ ଆଦି ରସ ଏବଂ ଫ୍ରୟେଡ୍‌ବାଦ, ସ୍ୱଚ୍ଛନ୍ଦତାବାଦ, ଅତିବାସ୍ତବବାଦ ଏବଂ ସ୍ଥିତିବାଦ ଆଦି ଦର୍ଶନ ପ୍ରସ୍ଫୁଟିତ ହୋଇପାରେ ।

## ୧୧-ବର୍ଣ୍ଣନାଧର୍ମୀ ଗଳ୍ପ :

କେତେକ ଗଳ୍ପରେ ଲେଖକ ସମୁଦାୟ ପ୍ରସଙ୍ଗ ବର୍ଣ୍ଣନାକରି ଉପସ୍ଥାପିତ କରିଥାନ୍ତି । ସେ ଗଳ୍ପ ପରିସରରେ ଘଟଣାଟିଏ ନ ଘଟାଇ ଘଟଣାର ତମାମ୍ ବିବରଣୀ ଉପସ୍ଥାପିତ କରିଥାନ୍ତି ଏବଂ ଘଟଣାଟି ପ୍ରତି ଚରିତ୍ରର ପ୍ରତିକ୍ରିୟାକୁ ସଂଳାପ କି ସ୍ୱଗତରେ ପ୍ରକାଶ

ନକରି ନିଜେ ବର୍ଣ୍ଣନା କରିଥାନ୍ତି । ଉପସଂହାର ସୁଦ୍ଧା ଲେଖକ ନିଜେ ବର୍ଣ୍ଣନାକରି ଗଳ୍ପର ବକ୍ତବ୍ୟ ଓ ପରିଣତି ପାଠକକୁ ଶୁଣାଇଦିଅନ୍ତି । ପାଠକ ନିଜେ କିଛି ଚିନ୍ତାକରିବାକୁ ସୁଯୋଗ ପାଏନାହିଁ । ଏପରିକି ଚରିତ୍ରର ବିକାଶ ମଧ୍ୟ ଲେଖକ ଦ୍ୱାରା ନିୟନ୍ତ୍ରିତ ହୁଏ । ଏଭଳି ଗଳ୍ପକୁ ବର୍ଣ୍ଣନାଧର୍ମୀ ଗଳ୍ପ କୁହାଯାଏ ।

ଏଥିରେ ଗାଳ୍ପିକ କଥାଭାଗଟିଏ ଆରମ୍ଭକରି ତାହାର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଧାରାବାହିକ ଭାବେ ବର୍ଣ୍ଣନା କରିଥାନ୍ତି । ଗାଳ୍ପିକ ଏଥିରେ ସର୍ବଦ୍ରଷ୍ଟା ଓ ସର୍ବଜ୍ଞାତା ଭଳି ଘଟଣା ଏପରିକି ଚରିତ୍ରର ମନୋଭାବ ପର୍ଯ୍ୟନ୍ତ କଳନା କରିଥାନ୍ତି । ପରିବେଶର ଟିକିନିଖି ଦୃଶ୍ୟ, ଘଟଣାର ଅବିକଳ ଚିତ୍ର, ଚରିତ୍ରର ବକ୍ତବ୍ୟର ପ୍ରତ୍ୟେକ ଶବ୍ଦପଦ ଏବଂ ଭାବନାର ପ୍ରତ୍ୟେକ ପ୍ରସଙ୍ଗ ଏହି ବର୍ଣ୍ଣନାର ଅନ୍ତର୍ଗତ ହୋଇଥାଏ ।

ବାସ୍ତବବାଦୀ (ବର୍ଣ୍ଣନାଧର୍ମୀ) ଦର୍ଶନ; ସାମାଜିକ, ଐତିହାସିକ ବିଷୟ; ପ୍ରାକୃତିକ ବିପର୍ଯ୍ୟୟ ଯଥା ମରୁଡ଼ି-ବନ୍ୟା-ବାତ୍ୟା ଓ ଯୁଦ୍ଧ-ସନ୍ଧି ଆଦି ପ୍ରସଙ୍ଗ କ୍ଷେତ୍ରରେ ବର୍ଣ୍ଣନାଧର୍ମୀତା ପ୍ରଯୁକ୍ତ ହୁଏ । ମୁଖ୍ୟତଃ କରୁଣ ଓ ବିଭତ୍ସ ରସ ଏବଂ କଦାଚିତ ହାସ୍ୟ ଓ ଶୃଙ୍ଗାର ରସ ଏ ପ୍ରକାର ଗଳ୍ପରୁ ଉପଲଭ୍ୟ ହୁଏ ।

## ୧୨-ମନୋବିଶ୍ଳେଷଣଧର୍ମୀ ଗଳ୍ପ :

କେତେକ ଗଳ୍ପରେ ଗଳ୍ପଘଟଣା ସଂକ୍ଷିପ୍ତ ହୋଇଥାଏ; ମାତ୍ର ତାହାକୁ ଭିତ୍ତିକରି ଚରିତ୍ରର ଚିନ୍ତନ ଓ କ୍ରିୟା ହୋଇଥାଏ ବ୍ୟାପକ । ତହିଁରେ ଘଟଣା ଅପେକ୍ଷା ଏହି ଚିନ୍ତନ ହିଁ ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇଥାଏ । ଗଳ୍ପର ବକ୍ତବ୍ୟ ବା ସନ୍ଦେଶ ଏହି ଚିନ୍ତନ ଅନୁଯାୟୀ ନିୟନ୍ତ୍ରିତ ହୋଇଥାଏ । ଗଳ୍ପରେ ଲେଖକଙ୍କ ବର୍ଣ୍ଣନା ଅପେକ୍ଷା ଚରିତ୍ରର ଆତ୍ମସଂଳାପ ଅଧିକ କ୍ଷେତ୍ରରେ ପ୍ରଯୁକ୍ତ ହୋଇଥାଏ । ଏଭଳି ଗଳ୍ପକୁ ମନୋବିଶ୍ଳେଷଣଧର୍ମୀ ଗଳ୍ପ କୁହାଯାଏ ।

ଏଥିରେ ଅବଚେତନ ମନର ସଂଗୁପ୍ତ ଚିନ୍ତା ବାସ୍ତବ ଘଟଣା ପରିପ୍ରେକ୍ଷୀରେ ଯେଉଁ ଅଦଭୂତ ପରିସ୍ଥିତି ସୃଷ୍ଟି କରାଏ ତାହାର ରୂପାୟନ ଘଟିଥାଏ । ବିଶେଷତଃ ମଣିଷ ମନର ଅତଳାନ୍ତ ଗଭୀରତାର ବିଶ୍ଳେଷଣ ହିଁ ଏ ପ୍ରକାର ଗଳ୍ପର ପ୍ରସଙ୍ଗ ହୋଇଥାଏ । ଏ ଧରଣର ଗଳ୍ପ ଜଟିଳ ଅନ୍ତର୍ଦ୍ୱନ୍ଦ୍ୱ ବିଶିଷ୍ଟ ।

ସମସ୍ତ ପ୍ରକାର ପ୍ରବୃତ୍ତି ହେତୁକ ପୀଡ଼ା ଓ ତାର ବିବିଧ ପ୍ରକାଶ ଏପ୍ରକାର ଗଳ୍ପର ପ୍ରସଙ୍ଗ ହୋଇଥାଏ । ଏଥିରେ ବୈୟକ୍ତିକ-ପାରିବାରିକ, ସାମାଜିକ-ଆଧ୍ୟାତ୍ମିକ ବିଷୟ ଅଙ୍ଗିଭୂତ ହୋଇପାରେ । ଶିଶୁ-ବାଳ ଠାରୁ ଯୁବ-ପ୍ରୌଢ ଓ ବୃଦ୍ଧ ପର୍ଯ୍ୟନ୍ତ ବୟସର ଚରିତ୍ର ଏଥିରେ ଅନ୍ତର୍ଗତ ହୋଇପାରନ୍ତି । ଶୃଙ୍ଗାର, ବିଭତ୍ସ, ଭକ୍ତି, ଶାନ୍ତ ଇତ୍ୟାଦି ରସର ପ୍ରକାଶ ଏହି ପ୍ରକାର ଗଳ୍ପରେ ଘଟିଥାଏ । ବିସ୍ମରଣ, ସ୍ମୃତି ତଲ୍ଲୀନତା, ବାକ୍ଚ୍ୟୁତି ଆଦି

ଘଟଣାରେ ଏ ପ୍ରକାର ଗଳ୍ପର ଦ୍ୱନ୍ଦ୍ୱ ଓ ଶୀର୍ଷ ନିହିତ ରହେ । ସ୍ଥଳବିଶେଷରେ ଚରିତ୍ରର ଚିଠିପତ୍ର ଓ ଡ଼ାଇରୀ ଆଦି ଉପସ୍ଥାପନ କରାଯାଇଥାଏ ।

## ୧୩-ରୂପକଧର୍ମୀ ଗଳ୍ପ :

କେତେକ ଗଳ୍ପରେ ପ୍ରାଣୀଚରିତ୍ର ଗୁଡ଼ିକ ନିଜର ଏକ ସ୍ୱତନ୍ତ୍ର ଜଗତରେ (ବନ-ଅରଣ୍ୟ-ପର୍ବତ-ଉପତ୍ୟକା) ମାନବସୁଲଭ ସମସ୍ୟାରେ ପଡ଼ି ତହିଁରୁ ଉତ୍ତୀର୍ଣ୍ଣ ହେବାପାଇଁ ନାନା ଘଟଣା ଘଟାଉଥିବା ଦେଖାଯାଏ । ଟିକିଏ ତଳେଇକରି ଦେଖିଲେ ଦେଖାଯାଏ ଯେ, ସେ ଘଟଣା ପ୍ରକୃତରେ ମାନବ ସମାଜର ଏକ ସତ୍ୟ ଘଟଣାର ଅନୁରୂପ ଅଥବା ପ୍ରତିରୂପ କିମ୍ବା ନ୍ୟୂନତଃ ଛାୟାରୂପ । ଏଭଳି ମାନବ ସମାଜର ଘଟଣା-ପରିବେଶ-ଚରିତ୍ରକୁ ପ୍ରାଣୀ ସମାଜର ଘଟଣା-ପରିବେଶ-ଚରିତ୍ର ମାର୍ଫତରେ ପ୍ରକାଶ କରାଯାଉଥିବା ରୀତିକୁ ରୂପକଧର୍ମୀତା କୁହାଯାଏ । ଏଣୁ ଏଭଳି ଗଳ୍ପକୁ ରୂପକଧର୍ମୀ ଗଳ୍ପ କୁହାଯାଏ ।

ଏ ପ୍ରକାର ଗଳ୍ପରେ ମାନବେତର ଚରିତ୍ରଠାରେ ମାନବୀୟତ୍ୱ ଆରୋପ କରାଯାଇଥାଏ; ଅର୍ଥାତ୍ ମାନବେତର ଚରିତ୍ରଟି ମାନବ ପରି ଚିନ୍ତାକରେ, କଥାକହେ ଓ କାର୍ଯ୍ୟ ମଧ୍ୟ କରେ । ପରିବେଶଟି ଅରଣ୍ୟ-ଉପବନ ହୋଇଥିଲେ ହେଁ ତାହାର ବିବିଧ ସାମଗ୍ରୀ-ଆସବାବ, ଗୃହ-ବସତି-ଜନପଦ-ନଗର, ପଥ-ପ୍ରାନ୍ତର, ଅଞ୍ଚଳି-ଅଟବୀ ଇତ୍ୟାଦି ମାନବ ବ୍ୟବହାରୋପଯୋଗୀ ହୋଇଥାଏ । ସମସ୍ୟାଟି ମାନବ ସମାଜର ସଦ୍ୟତମ କରୁଣ-ବିଭତ୍ସ-ଭୟାନକ-ଘୃଣ୍ୟ ଘଟଣାକୁ ଆଶ୍ରୟ କରିଥାଏ ।

ଏହା ସଂପୂର୍ଣ୍ଣ କଳ୍ପିତ ଏକ ଅରଣ୍ୟରାଜ୍ୟ ଓ ତାର ଅଧିବାସୀଙ୍କୁ ନେଇ ଗଢ଼ି ଉଠି ଥାଇପାରେ କିମ୍ବା ପୂର୍ବ ପରିଚିତ ଏକ ଲୋକଗଳ୍ପ ଅଥବା ପ୍ରାଣୀଚରିତ୍ର ମୁଖ୍ୟ କଥନିକାକୁ ଆଶ୍ରୟ କରି ଗଠିତ ହୋଇପାରେ । ଉଭୟ କ୍ଷେତ୍ରରେ ମାନବ ସମାଜର ଘଟଣାଟି ଆରୋପିତ ହୋଇଥାଏ ।

ଏଭଳି ଗଳ୍ପ ମୁଖ୍ୟତଃ ବ୍ୟଙ୍ଗଧର୍ମୀ (ବିଦ୍ରୂପାତ୍ମକ) ହୋଇଥାଏ; କାରଣ ପ୍ରକୃତରେ ଚଳନ୍ତି ପ୍ରଶାସନ ବିରୁଦ୍ଧରେ ଲେଖକର ଚଟୁଳ ପ୍ରତିକ୍ରିୟା ହିଁ ଏଭଳି ଗଳ୍ପରେ ପ୍ରାଣୀରୂପକରେ ପ୍ରତିଫଳିତ କରାଯାଇଥାଏ । ରାଜନୀତିର ଭ୍ରଷ୍ଟାଚାର ପ୍ରତି ଲେଖକର ଛଦ୍ମ ଅଥଚ ଦୃଢ଼ ପ୍ରତିକ୍ରିୟାର ପ୍ରକାଶ ପାଇଁ ଏଭଳି ଗଳ୍ପରୀତି ବେଶ୍ ସହାୟକ ଓ ଉପଯୋଗୀ ହୁଏ ।

କେବଳ ରାଜନୀତି ବା ପ୍ରଶାସନର ଅତ୍ୟାଚାର ଓ ପୀଡ଼ା ନୁହେଁ ସାମାଜିକ କ୍ଷେତ୍ରରେ ସୁଦ୍ଧା ସୁଲଭ ଗୋଷ୍ଠୀଦ୍ୱନ୍ଦ୍ୱ, କଳହ, ଅସାମାଜିକ ଆଚରଣ, ଈର୍ଷା ଦ୍ୱେଷ, ଅନ୍ୟାୟ ଅବିଚାର ଓ ସଂପର୍କହୀନତା ଆଦି ପ୍ରସଙ୍ଗ ଏ ପ୍ରକାର ରୂପକଧର୍ମୀତା

ମାଧ୍ୟମରେ ଅଧିକ ଅର୍ଥବହ ଓ ସଂଶୋଧନପ୍ରଦ ହୋଇ ପ୍ରକଟିତ ହୋଇପାରେ ।

ଏହି ଶୈଳୀରେ ହାସ୍ୟ ଓ କରୁଣ ରସ; ରାଜନୀତିକ ଓ ସାମାଜିକ ବିଷୟ; ମନସ୍ତାତ୍ତ୍ୱିକ ବିଚାର; ମାର୍କ୍ସବାଦୀ, ବାସ୍ତବବାଦୀ ଦର୍ଶନ ପ୍ରସ୍ଫୁଟିତ ହୋଇପାରେ ।

ବ୍ୟଙ୍ଗଧର୍ମୀ ଏବଂ ସାଧାରଣ ମଣିଷର ପକ୍ଷଭୁକ୍ତ ହୋଇଥିବାରୁ ଏ ପ୍ରକାର ଗଳ୍ପ ପାଠକର ପ୍ରିୟ ହୋଇଥାଏ । ତେବେ ଗଳ୍ପର ରୂପକ ଆବରଣଟି ଉନ୍ମୋଚନ କରିବାରେ ଯେଉଁ ପାଠକ ଯେତେ କ୍ଷିପ୍ର ଓ ସଫଳ, ସେ ସେତେ ଦ୍ରୁତ ଓ ଅଧିକ ରସାସ୍ୱାଦର ଯୋଗ୍ୟ ହୁଅନ୍ତି ।

## ୧୪-ସଙ୍କେତଧର୍ମୀ ଗଳ୍ପ :

କେତେକ ଗଳ୍ପ ସିଧାସଳଖ ବର୍ଣ୍ଣନା ନହୋଇ ସଂକେତରେ ବିବୃତ ହୋଇଥାଏ । ଗଳ୍ପ ବର୍ଣ୍ଣନାର ବାହ୍ୟ ଅର୍ଥ ଭିନ୍ନ ଏକ ପ୍ରଚ୍ଛନ୍ନ ଅର୍ଥ ତହିଁରୁ ପାଠକକୁ ପ୍ରେରିତ ହୁଏ । ଏହାକୁ ସଙ୍କେତଧର୍ମୀ ଗଳ୍ପ କୁହାଯାଏ ।

ଅର୍ଥ ସାଂକେତିକତା ବ୍ୟତୀତ ଆଙ୍ଗିକରେ ମଧ୍ୟ ସାଂକେତିକତା ଅବଲମ୍ବନ କରାଯାଇପାରେ । ସେଗୁଡ଼ିକ ମଧ୍ୟ ସାଂକେତିକ ଗଳ୍ପ ପର୍ଯ୍ୟାୟବାଚୀ ।

ସାଂକେତିକ ଗଳ୍ପ ବୌଦ୍ଧିକ ଓ ମନସ୍ତାତ୍ତ୍ୱିକ ହୁଏ । ସଙ୍କେତ ହିଁ ଏହାର ସାଧାରଣୀକରଣର ଅନ୍ତରାୟ ହୁଏ । କଥାକାରଙ୍କ ପ୍ରେରିତ ସଙ୍କେତ ପାଠକ ପାଇଁ ଅଜ୍ଞାତ ଥିଲେ ଗଳ୍ପଟି କେବଳ ବୌଦ୍ଧିକ-କାଠିନ୍ୟ ଦୋଷରେ ଦୁଷ୍ଟ ହୁଏ ।

ତେବେ ସର୍ବଜନବୋଧ ସଂକେତ ଆଶ୍ରୟରେ କୌଣସି ନବୀନ ସମ୍ଭାବନା ଇଙ୍ଗିତ କରାଇପାରିବା ଲେଖକଙ୍କ କୁଶଳତାର ପ୍ରମାଣ ହୁଏ । ଅନ୍ୟଥା ତାହା ଲେଖକଙ୍କର ଅପାରଗତା ପ୍ରମାଣ କରେ ।

ସଙ୍କେତଧର୍ମୀ ଗଳ୍ପରେ ସମସ୍ତ ବିଷୟ, ସମସ୍ତ ରସ ଏବଂ ସମସ୍ତ ଦର୍ଶନ ପ୍ରଯୁକ୍ତ ହୋଇପାରେ ।

ଉପର ଆଲୋଚିତ ରୀତି ବ୍ୟତୀତ କେହିକେହି ଭାଷାଶୈଳୀ ଦୃଷ୍ଟିରୁ ହିଁ କ୍ଷୁଦ୍ରଗଳ୍ପକୁ ବିଚାର କରିଥାନ୍ତି । କିନ୍ତୁ ଭାଷାଶୈଳୀ ହେଉଛି ଭାଷାର ଶୈଳୀ; ତାହାକୁ ଗଳ୍ପଶୈଳୀ ଭାବେ ବିବେଚନା କରିବା ଅନୁଚିତ । (‘ଭାଷା’ ଦେଖନ୍ତୁ) ।

# ପ୍ରକାର

## (କ୍ଷୁଦ୍ରଗଳ୍ପର ପ୍ରକାରଭେଦ)

ପ୍ରକାର ଦୃଷ୍ଟିରୁ କ୍ଷୁଦ୍ରଗଳ୍ପ ବହୁବିଧ ହୋଇପାରେ । ପୁଣି ବହୁବିଧ ଦୃଷ୍ଟିରୁ ଓ ପ୍ରତିଟି ଦୃଷ୍ଟିରୁ ଏକାଧିକ ପ୍ରକାର କ୍ଷୁଦ୍ରଗଳ୍ପ ସୃଷ୍ଟି ହୋଇପାରେ । ଶୈଳୀ ଦୃଷ୍ଟିରୁ (ପୂର୍ବରୁ ଆଲୋଚିତ) ୧୪ ପ୍ରକାରକୁ ବାଦଦେଲେ କ୍ଷୁଦ୍ରଗଳ୍ପ ୭ଟି ଦୃଷ୍ଟିରୁ ବର୍ଗୀକୃତ ହୋଇପାରେ ।

ସେଗୁଡ଼ିକ ମୁଖ୍ୟତଃ :-

(କ) ବିଷୟବସ୍ତୁ ଦୃଷ୍ଟିରୁ

(ଖ) ଦର୍ଶନ ଦୃଷ୍ଟିରୁ

(ଗ) ଆବେଦନ ଦୃଷ୍ଟିରୁ

(ଘ) ତତ୍ତ୍ୱ ଦୃଷ୍ଟିରୁ

(ଙ) କଥାଭାଗ ଦୃଷ୍ଟିରୁ

(ଚ) ଆକାର ଦୃଷ୍ଟିରୁ

(ଛ) ଉପଯୋଗୀତା ଦୃଷ୍ଟିରୁ ଓ

(ଜ) ବିବିଧ ଦୃଷ୍ଟିରୁ ହୋଇପାରେ ।

### (କ) ବିଷୟବସ୍ତୁ ଦୃଷ୍ଟିରୁ :

ବିଷୟବସ୍ତୁ ଦୃଷ୍ଟିରୁ କ୍ଷୁଦ୍ରଗଳ୍ପକୁ ନିମ୍ନମତେ ବିଭାଗୀକୃତ କରାଯାଇପାରେ ଯଥା: (୧) ପୌରାଣିକ (୨) ଆଧ୍ୟାତ୍ମିକ (୩) ଐତିହାସିକ (୪) ଲୌକିକ (୫) ଦାର୍ଶନିକ (୬) ସାମାଜିକ (୭) ରାଜନୀତିକ (୮) ବୈଜ୍ଞାନିକ (୯) ଭୌତିକ (୧୦) ରହସ୍ୟଭେଦମୂଳକ (୧୧) ଆଞ୍ଚଳିକ (୧୨) କ୍ଷେତ୍ରୀୟ (୧୩) କାଳ୍ପନିକ (୧୪) ଯୁଦ୍ଧ ଭିତ୍ତିକ (୧୫) ପର୍ଯ୍ୟଟନ ଭିତ୍ତିକ (୧୬) ଦୁଃସାହସିକ ଅଭିଯାନମୂଳକ (୧୭) ଜୀବନୀମୂଳକ (୧୮) ପାରିବାରିକ ଓ (୧୯) ବୈୟକ୍ତିକ ପ୍ରଭୃତି ।

## (୧) ପୌରାଣିକ ଗଳ୍ପ :

ଯେଉଁ ଗଳ୍ପରେ ପୁରାଣ-ସାହିତ୍ୟର କଥାବସ୍ତୁ, ଚରିତ୍ର ଓ ପରିବେଶ ଗୃହୀତ ହୋଇଥାଏ ତାହାକୁ ପୌରାଣିକ ଗଳ୍ପ କୁହାଯାଏ । ପୁରାଣ ଗର୍ଭିତ ଏକ ସଂକ୍ଷିପ୍ତ କାହାଣୀକୁ ମଧ୍ୟ ପୌରାଣିକ ଗଳ୍ପ କୁହାଯାଇଥାଏ । ମାତ୍ର ଆଲୋଚନା ଦୃଷ୍ଟେ ଦ୍ୱିତୀୟଟିକୁ ଏଠାରେ ବିଚାର କରାଯାଉନାହିଁ ।

ଏ ପ୍ରକାର ଗଳ୍ପରେ ପୁରାଣକଥା ଓ ପୁରାଣ ଚରିତ୍ରର ବିକାଶ, ଖଣ୍ଡନ, ମଣ୍ଡନ କରାଯାଇଥାଏ । ପୁରାଣ କଥାର ଅଲୌକିକତାକୁ ମାନବୀୟ ଦୃଷ୍ଟିରୁ ବିଚାର କରିବା ଏବଂ ତାହାକୁ ସ୍ୱର୍ଗରୁ ଆଣି ମାନବଲୋକରେ ଘଟାଇବା ଏ ପ୍ରକାର ଗଳ୍ପରେ ଲକ୍ଷିତ ।

କେତେକ କ୍ଷେତ୍ରରେ ପୁରାଣ ଚରିତ୍ରର ନାମଧାମ ବ୍ୟବହାର କରି ଏବଂ ତାହାର ଚାରିତ୍ରିକତାକୁ ଉପଯୋଗକରି ସାମାଜିକ ପରିବେଶରେ ଗଳ୍ପ ରଚିତ ହୋଇଥାଏ । ମାତ୍ର ଏଗୁଡ଼ିକ ପୌରାଣିକ ଗଳ୍ପ ନହୋଇ ପ୍ରତୀକଧର୍ମୀ ବା ସଙ୍କେତଧର୍ମୀ ଗଳ୍ପ ଭାବେ ବିବେଚିତ ହୁଏ ।

ପୌରାଣିକ ଗଳ୍ପ ଲେଖକର ନବନିର୍ମାଣର ଦକ୍ଷତା ଓ ପୁରାଣପ୍ରସଙ୍ଗର ଅବଗାହିତା ସାବ୍ୟସ୍ତ କରେ । ଏଥିରେ ପ୍ରାୟତଃ ପୁରାଣ, ଉପନିଷଦ, ଆରଣ୍ୟକ, ବ୍ରାହ୍ମଣ, ଉପପୁରାଣ ଓ ମହାକାବ୍ୟ ପ୍ରଭୃତି ଉପଜୀବ୍ୟ ହୋଇଥାଏ ।

ପୁରାଣ ପ୍ରସଙ୍ଗ ଓ ଚରିତ୍ର ପାଠକର ପରିଚିତ ହୋଇଥିବାରୁ ଏବଂ ସେଗୁଡ଼ିକ ପାଠକଠାରେ ଏକ ନିର୍ଦ୍ଦିଷ୍ଟ ଓ ସ୍ଥାୟୀ ଚେତନା ସୃଷ୍ଟି କରିଥିବା ଦୃଷ୍ଟିରୁ ଏପ୍ରକାର ଗଳ୍ପ ପାଠକକୁ ଅନ୍ତରଙ୍ଗ ଓ ଆପଣାର ମନେହୁଏ ।

## (୨) ଆଧ୍ୟାତ୍ମିକ ଗଳ୍ପ :

ଯେଉଁ ଗଳ୍ପରେ ଆଧ୍ୟାତ୍ମିକ ତତ୍ତ୍ୱ, ଆଧ୍ୟାତ୍ମିକ ପ୍ରସଙ୍ଗ, ଆଧ୍ୟାତ୍ମିକ ଚେତନା, ଆଧ୍ୟାତ୍ମିକ କ୍ଷେତ୍ରରେ ବ୍ୟୁତ୍ପତ୍ତି ଓ ପ୍ରତିଷ୍ଠା ଲବ୍ଧ ଚରିତ୍ର ଏବଂ ଆଧ୍ୟାତ୍ମିକ ଆସ୍ପୃହା ପ୍ରଭୃତିରୁ ଏକ ବା ଏକାଧିକ ଉପାଦାନ ପ୍ରଯୁକ୍ତ ହୋଇଥାଏ ତାହାକୁ ଆଧ୍ୟାତ୍ମିକ ଗଳ୍ପ କୁହାଯାଏ ।

ଏପ୍ରକାର ଗଳ୍ପରେ ଆଧ୍ୟାତ୍ମିକତାର ମହତ୍ତ୍ୱ ବସ୍ତୁବାଦିତାରୁ ଉର୍ଦ୍ଧ୍ୱଗ ହେବାର ପ୍ରଚୋଦନା, ଆଧ୍ୟାତ୍ମ ଗୁରୁ ବା ଦାର୍ଶନିକଙ୍କ ବିରଳ-ଉତ୍ସର୍ଗୀତ-ଉଜ୍ଜ୍ୱଳ ଚାରିତ୍ରିକତା ଓ ଉତ୍ତରଣ ପ୍ରଭୃତି ଦର୍ଶାଯାଇଥାଏ ।

କେତେକ କ୍ଷେତ୍ରରେ ଲେଖକର ସଂଯମ ଅଭାବରୁ ଏପ୍ରକାର ଗଳ୍ପ ପ୍ରଚାରଧର୍ମୀ, ଅତିରଞ୍ଜିତ ଏବଂ କୃତ୍ରିମ ହୋଇପଡ଼େ । ସ୍ୱୟଂ ଗାଳ୍ପିକଙ୍କର ପ୍ରଗାଢ଼ ଅନୁଭବ ନଥାଇ କେବଳ ଭାକ୍ତିକତା ଓ ଆବେଗ ତାଡ଼ନାରୁ ଗଳ୍ପରେ ଆଧ୍ୟାତ୍ମିକତାର ପ୍ରୟୋଗ

କରାଯାଇଥିଲେ, ତାହା ପାଠକକୁ ବିଭ୍ରାନ୍ତ କରିବା ସହ ସମୟ ସମୟରେ ପାଠକର ବିରାଗ ଅର୍ଜନ କରିଥାଏ । ପୁନଶ୍ଚ ତତ୍ତ୍ୱ ପ୍ରୟୋଗରେ ଯଥେଷ୍ଟ ପ୍ରାସଙ୍ଗିକତା ଓ ପ୍ରାଞ୍ଜଳତା ନରହିଲେ ଏ ଧରଣର ଗଳ୍ପ ତତ୍ତ୍ୱଗମ୍ଭୀର ଏଣୁ ନୀରସ ପ୍ରତେହୁଏ ।

## (୩) ଦାର୍ଶନିକ ଗଳ୍ପ :

ଯେଉଁ ଗଳ୍ପରେ ଦର୍ଶନତତ୍ତ୍ୱ ପ୍ରୟୋଗ ଓ ପ୍ରତିଷ୍ଠା ମୁଖ୍ୟ ହୋଇଥାଏ ତାହାକୁ ଦାର୍ଶନିକ ଗଳ୍ପ କୁହାଯାଏ । ଏହି 'ଦର୍ଶନତତ୍ତ୍ୱ' କୌଣସି ପ୍ରତିଷ୍ଠିତ ଦର୍ଶନର ହୋଇପାରେ କିମ୍ବା କଥାକାରଙ୍କ ନିଜସ୍ୱ ଦର୍ଶନ ମଧ୍ୟ ହୋଇପାରେ । ନିଜସ୍ୱ ଦର୍ଶନ କ୍ଷେତ୍ରରେ ତାହା ଯୁକ୍ତିଯୁକ୍ତ ଏବଂ ସମାଜଭୂମିର ସଂଲଗ୍ନ ହେବା ଜରୁରୀ ।

ଏପ୍ରକାର ଗଳ୍ପରେ ଗୃହୀତ ଦର୍ଶନର ତତ୍ତ୍ୱ ଲେଖକୀୟ ବର୍ଣ୍ଣନା କିମ୍ବା ଚରିତ୍ରର ସଂଳାପ ବା ଅନ୍ତଃସଂଳାପ ଅଥବା କାର୍ଯ୍ୟକଳାପ ଜରିଆରେ ପ୍ରକାଶ କରାଯାଇଥାଏ । ତେବେ ଗୃହୀତ ଦର୍ଶନ ପାଠକର ଏକାବେଳକେ ଅପରିଚିତ ହୋଇଥିଲେ ଗଳ୍ପଟି ତାହାର ଆବେଦନ କ୍ଷମତା ହରାଏ । ଏହା ହାର୍ଦ୍ଦିକ ହେବା ଅପେକ୍ଷା ବୌଦ୍ଧିକ ହୋଇଥିବାରୁ କେବଳ ବିଜ୍ଞପାଠକର ଆଦର ସଂପ୍ରୀତି ଲଭିଥାଏ ।

ଅନ୍ୟପକ୍ଷରେ ଦାର୍ଶନିକଙ୍କୁ ଚରିତ୍ର ଭାବରେ ନେଇ ତାଙ୍କ ପ୍ରତିଷ୍ଠିତ ଦର୍ଶନର ବ୍ୟାଖ୍ୟା ବିଶ୍ଳେଷଣର ଉଦ୍ୟମ କରାଯାଇଥିବା ଗଳ୍ପକୁ ଦାର୍ଶନିକ ଗଳ୍ପ କୁହାଯିବ ନାହିଁ ।

## (୪) ଲୌକିକ ଗଳ୍ପ :

ଲୋକ ସଂପ୍ରଦାୟର ଶ୍ରୁତି ଓ ସ୍ମୃତିରେ ଅନାଦି କାଳରୁ ଗୁମ୍ଫିତ ରହିଥାଏ କେତେକ ଅନୁଭୂତି ଓ ଉପଲବ୍ଧିର କଥାରୂପ । ଏଗୁଡ଼ିକରୁ କେତେକ ମିଥ୍ ଆକାରରେ ଜନସମୁଦାୟର ଚେତନାରେ ବଦ୍ଧମୂଳ ଥାଏ । ଆଉକେତେକ କେବଳ ଲୋକାଚାର ଭାବେ ପ୍ରଚଳିତ ଥାଏ । ଏ ଉଭୟକୁ ଲୋକକଥା କୁହାଯାଏ । ଲୋକକଥା, ଲୋକାଚାର, ଲୋକଚଳଣୀ ଓ ଲୋକପରିବେଶ ଆଶ୍ରୟରେ ଗଢ଼ିଉଠିଥାଏ ଯେଉଁ ଗଳ୍ପ ତାହାକୁ ଲୌକିକଗଳ୍ପ କୁହାଯାଇଥାଏ ।

ଲୌକିକ ଗଳ୍ପର ଭିତ୍ତି ହେଉଛି ଲୋକସଂସ୍କୃତି । ଲୋକ ସଂସ୍କୃତିରେ ନିହିତ ସ୍ୱାତନ୍ତ୍ର୍ୟ ଓ ବୈଶିଷ୍ଟ୍ୟ ଭିତ୍ତିରେ ଏକ ଆଧୁନିକ ଗଳ୍ପ ରଚନା ଲୌକିକଗଳ୍ପ ପର୍ଯ୍ୟାୟଭୁକ୍ତ ।

ଲୋକଗଳ୍ପ ପରି ଲୌକିକଗଳ୍ପରେ ପ୍ରାଣୀ-ଅପ୍ରାଣୀ, ବସ୍ତୁ, ପ୍ରକୃତିରୂପ ଓ ଅଶରୀରି ଭୂତ, ପ୍ରେତ, ପିଶାଚ, ଗନ୍ଧର୍ବ, ଡ଼ାହାଣୀ, ଦେବ, ଦେବୀ ପ୍ରଭୃତି ଚରିତ୍ର ଭାବେ ବ୍ୟବହୃତ ହୋଇପାରନ୍ତି କିମ୍ବା କୌଣସି ଆଧୁନିକମଣିଷ-ଚରିତ୍ରର ସହାୟକ ଚେତନା ଭାବେ ଆବିର୍ଭୂତ ହୋଇପାରନ୍ତି ।

ଲୌକିକ ଗଳ୍ପ ଏକ ଲୋକଗଳ୍ପର ଭିନ୍ନ ସମ୍ଭାବନା ଓ ସୁଯୋଗର ରୂପାୟନ ହୋଇପାରେ । ଏଭଳି କ୍ଷେତ୍ରରେ ଲୋକଗଳ୍ପର ମୂଳସନ୍ଦେଶ ରୂପାନ୍ତରିତ ହେଉଥିଲେ ହେଁ ମୂଳଗଳ୍ପର କେତେକ ଉପାଦାନ ଅବିକୃତ ରଖିବାକୁ ହୁଏ । ନଚେତ୍ ଏହା କଳ୍ପିତଗଳ୍ପ ହୋଇପାରେ ସିନା ଲୌକିକଗଳ୍ପ ହୋଇପାରେ ନାହିଁ । ଯେଉଁଠି ଲୋକଗଳ୍ପର ସନ୍ଦେଶ କେବଳ ନୂତନଗଳ୍ପରେ ଭିନ୍ନରୂପରେ ପ୍ରସଙ୍ଗୀଭୂତ ହୋଇଥାଏ ତାହା ଉପଦେଶାତ୍ମକ ଗଳ୍ପ କିମ୍ବା ସଙ୍କେତଧର୍ମୀଗଳ୍ପ ହୁଏ ।

## (୫) ଐତିହାସିକ ଗଳ୍ପ :

ଇତିହାସର ଘଟଣା, ସ୍ଥାନ, ଚରିତ୍ର ଓ ସମୟ ପ୍ରତ୍ୟେକ ସାମଗ୍ରିକ ପୁଣି ଏକକ ଭାବେ ଆପଣା ବିଶେଷତ୍ୱ ରଖିଥାନ୍ତି । ଶାସକ ଓ ଶାସନସଂପୃକ୍ତ ଉଚ୍ଚପଦାଧିକାରୀଙ୍କ ବିଭିନ୍ନ ଉଲ୍ଲେଖନୀୟ କ୍ରିୟାକଳାପ—ଯୁଦ୍ଧ, ସନ୍ଧି, ନିର୍ମାଣ, ଧ୍ୱଂସ, ଖନନ, ରୋପଣ ଆଦି ଘଟଣା—ନଗର, ଜନପଦ, ପ୍ରାନ୍ତର, ପର୍ବତ, ଉପତ୍ୟକା, ତଟ, ବନ ଆଦି ସ୍ଥାନ ଓ ଏସବୁର ସାକ୍ଷ କାଳକୁ ଉପଯୋଗକରି ଯେଉଁ ଗଳ୍ପ ରଚିତ ହୁଏ ତାହାକୁ ଐତିହାସିକ ଗଳ୍ପ କୁହାଯାଏ ।

ଐତିହାସିକ ଗଳ୍ପ ଅବିକୃତ ଇତିହାସ ନୁହେଁ କିମ୍ବା ଅତିରଞ୍ଜିତ ଅତୀତକଥା ନୁହେଁ । ତଥ୍ୟସମ୍ମତ ଐତିହାସିକ ଉପାଦାନ ଆଶ୍ରୟରେ ଚରିତ୍ରର ଚାରିତ୍ରିକତା ଓ ଘଟଣାର ଗୋପନଦିଗ ପ୍ରସ୍ଫୁଟନ ଓ ଉନ୍ମୋଚନ ହେଉଛି ଐତିହାସିକ ଗଳ୍ପର ଉଦ୍ଦେଶ୍ୟ । ଏଥିରେ ମୁଖ୍ୟଚରିତ୍ର, ମୁଖ୍ୟଘଟଣା, ମୁଖ୍ୟପ୍ରସଙ୍ଗ ଓ ମୁଖ୍ୟ ଉଦ୍ଦେଶ୍ୟ ଇତିହାସଭିତ୍ତିକ ଏବଂ ଗୌଣ ଚରିତ୍ର-ଘଟଣା-ପ୍ରସଙ୍ଗ କଳ୍ପନାସଞ୍ଜାତ ହୋଇପାରେ । ତେବେ ଏ ଉଭୟର ସୁସମବାୟ ନରହିଲେ ଗଳ୍ପଟି 'ଐତିହାସିକ' ନହୋଇ କାଳ୍ପନିକ ଗଳ୍ପ ପାଲଟିଯାଏ ।

ଇତିହାସକାରଙ୍କ ଦୃଷ୍ଟିବଞ୍ଚିତ କିମ୍ବା ଅବହେଳାଗ୍ରସ୍ତ ଚରିତ୍ର, ଘଟଣା ଓ ସ୍ଥାନକୁ ଯଥୋପଯୁକ୍ତ ମହତ୍ତ୍ୱ ଦିଆଇ ଇତିହାସର ବିସ୍ମୃତିରୁ ବ୍ୟକ୍ତି-ସ୍ଥାନ ଓ ଘଟଣାକୁ ଉଦ୍ଧାର କରି ଭବିଷ୍ୟତ ପାଇଁ ସମ୍ପାଦିବାରେ ଐତିହାସିକ ଗଳ୍ପ ପ୍ରମୁଖ ଭୂମିକା ନେଇପାରେ । କାରଣ ଇତିହାସ ସୁଦ୍ଧା ଲୋକକଥା-କିମ୍ବଦନ୍ତୀ ଓ ଜନଶ୍ରୁତି ଆଧାରରେ ରଚିତ ହୁଏ । ଐତିହାସିକ ଗଳ୍ପ ଇତିହାସକୁ ଦେଇଥାଏ ଦୀର୍ଘଜୀବନ ଓ ଅଧିକ ଲୋକସଂପୃକ୍ତି ।

## (୬) ସାମାଜିକ ଗଳ୍ପ :

ଯେଉଁ ଗଳ୍ପରେ ସମାଜର ରୂପ-ରଙ୍ଗ, ଅବସ୍ଥା-ବ୍ୟବସ୍ଥା, ସମସ୍ୟା-ସଙ୍କଟ, ପରିପାର୍ଶ୍ୱ-ପରିମଣ୍ଡଳ, ପରିବେଶ-ପରିସ୍ଥିତି, ଭାବ-ଭାବନା, ଆଚାର-ବିଚାର ଓ ମଣିଷ ରୂପ ପାଇଥାଏ ତାହାକୁ ସାମାଜିକ ଗଳ୍ପ କୁହାଯାଏ ।

ଏଥିରେ ଉପରଲିଖିତ ପ୍ରସଙ୍ଗର ଚିତ୍ରଣ ସହିତ ମଣିଷର ସେଥିପ୍ରତି ଗୋଷ୍ଠୀଗତ ପ୍ରତିକ୍ରିୟାର ପ୍ରକାଶ ରହିବା ବାଞ୍ଛନୀୟ । ପ୍ରତିକ୍ରିୟାର ଆଭିମୁଖ୍ୟ ଆଦର୍ଶଯୁକ୍ତ ହୋଇପାରେ କିମ୍ବା ବାସ୍ତବତାଯୁକ୍ତ ହୋଇପାରେ । ଉଲ୍ଲିଖିତ ମୂଳସମସ୍ୟାରୁ ନାୟକର ଉତ୍ତୀର୍ଣ୍ଣ ହେବା କିମ୍ବା ସମସ୍ୟାରେ ପୀଡ଼ିତ ହୋଇ ତାପିତ ହେବା ଉଭୟ ପରିସ୍ଥିତିରେ ଗଳ୍ପ ସାମାଜିକଗଳ୍ପ ହୁଏ ।

ଏହା ବିଶ୍ୱସନୀୟ, ଗ୍ରହଣୀୟ, ଶୋଭନୀୟ ଓ ସ୍ପୃହଣୀୟ ହେବା ଜରୁରୀ । ଏହା ନହୋଇଥିଲେ ଗଳ୍ପ ସମାଜପରିବେଶରେ ଘଟୁଥିବାର ବର୍ଣ୍ଣନା ଥାଇ ମଧ୍ୟ ସାମାଜିକଗଳ୍ପ ବୋଲାଇପାରେ ନାହିଁ ।

ସାମାଜିକଗଳ୍ପ ସମାଜଚିତ୍ର ହୋଇଥିବାରୁ ଏହାର ରଚନା ସହଜ ମନେହେଲେ ହେଁ ପାତ୍ର-ପରିସ୍ଥିତି-କାଳର ସୁସମଞ୍ଜସତା ନରହିପାରିଲେ ଏହା ବିଫଳତାରେ ପର୍ଯ୍ୟବଶିତ ହୁଏ ।

## (୭) ରାଜନୀତିକ ଗଳ୍ପ :

ଯେଉଁ ଗଳ୍ପରେ ପ୍ରଚଳିତ କିମ୍ବା ସାମାନ୍ୟ ଅତୀତର ପ୍ରଶାସନ ସଂପର୍କୀୟ କଥାବସ୍ତୁ ଗୃହୀତ ହୋଇଥାଏ ତାହାକୁ ରାଜନୀତିକ ଗଳ୍ପ କୁହାଯାଏ ।

ଏଥିରେ ରାଜନୀତିକ ନେତା-ମନ୍ତ୍ରୀ, ଚାମଚା-ବଟସ୍କର, ଅଫିସର-କିରାଣୀ ଓ ସାଧାରଣ ଜନତା ଭଳି ଚରିତ୍ର; ନିର୍ବାଚନ-ନିର୍ବାଚନୀ କ୍ରିୟାକଳାପ-ଉଦ୍‌ଘାଟନ-ଶିଳାନ୍ୟାସ-ସାଧାରଣ ସଭା-ଉଦ୍‌ବୋଧନ-ବିପ୍ୱାତଗ୍ରସ୍ତ ଅଞ୍ଚଳ ଭ୍ରମଣ-ବିଦେଶଯାତ୍ରା ଇତ୍ୟାଦି ଘଟଣା; ଘେରାଉ-ପ୍ରତିବାଦ-ଜାଗରଣ-ନୂତନ ନେତାର ଉଦୟ ଇତ୍ୟାଦି ପ୍ରତିକ୍ରିୟା ଏବଂ ଅବଶୋଷ-ହତାଶା-ଆତ୍ମଗ୍ଲାନି ଏବଂ ନବୀନଆଶା ପ୍ରଭୃତି ଉପଲବ୍ଧି ଅଙ୍ଗୀଭୂତ ହୋଇଥାଏ ।

ଏହା ମୁଖ୍ୟତଃ ପ୍ରଚଳିତ ଶାସନ ଓ ଶାସକର ଦୋଷ ଦୁର୍ବଳତା ପ୍ରତି ଆକ୍ଷେପ ଏବଂ ପ୍ରତାରିତ ଜନତାପ୍ରତି ଦରଦଯୁକ୍ତ ହୋଇଥାଏ । ରାଜନୀତିକ ଗଳ୍ପ ସବୁବେଳେ ରାଜନୀତିର ବିଫଳଦିଗ ଉପରେ ଆଶ୍ରିତ । ଏଣୁ ବ୍ୟଙ୍ଗ-ପରିହାସ-ଆକ୍ଷେପ ଏହାର ମୁଖ୍ୟ ସ୍ୱର ।

## (୮) ବୈଜ୍ଞାନିକ ଗଳ୍ପ :

ଯେଉଁ ଗଳ୍ପରେ ବିଜ୍ଞାନ ବିଷୟକ ପ୍ରସଙ୍ଗ ମୁଖ୍ୟ ହୋଇଥାଏ ତାହାକୁ ବୈଜ୍ଞାନିକ ଗଳ୍ପ କୁହାଯାଏ ।

ବିଜ୍ଞାନର ତତ୍ତ୍ୱର ଉପଯୋଗରେ ସରଳ ବିଜ୍ଞାନଶିକ୍ଷା ପାଇଁ ଉଦ୍ଦିଷ୍ଟ ଗଳ୍ପଠାରୁ, ବୈଜ୍ଞାନିକ ଆବିଷ୍କାର-ଉଦ୍ଭାବନର ପ୍ରାକ୍‌ଯୋଜିତ ଘଟଣାଭିତ୍ତିକ ଗଳ୍ପ ସମେତ ବିଜ୍ଞାନର

ଉପଯୋଗିତା ସାବ୍ୟସ୍ତ ହୋଇଥିବା ଗଳ୍ପ ପର୍ଯ୍ୟନ୍ତ ସମସ୍ତ ପ୍ରକାର ଗଳ୍ପ ବୈଜ୍ଞାନିକ ଗଳ୍ପ ଶ୍ରେଣୀଭୁକ୍ତ ।

ତଥ୍ୟସମ୍ମତ ଓ ତତ୍ତ୍ୱଭିତ୍ତିକ ହେଲେ କେବଳ ତାହାକୁ ବୈଜ୍ଞାନିକ ଗଳ୍ପ କୁହାଯାଏ । ମାତ୍ର ବିଜ୍ଞାନ ପୃଷ୍ଠଭୂମିରେ ଅଦ୍ଭୁତ-ଅସମ୍ଭବ ଘଟଣା ଘଟୁଥିବା ସବୁଗଳ୍ପ ବୈଜ୍ଞାନିକ ଗଳ୍ପ ହୋଇପାରେ ନାହିଁ । ସେଭଳି ତଥ୍ୟହୀନ ଓ ତତ୍ତ୍ୱଅସମର୍ଥିତ ଗଳ୍ପ କାଳ୍ପନିକ ଗଳ୍ପ ବୋଲାଏ ।

ବୈଜ୍ଞାନିକ ଗଳ୍ପ ପରିସରରେ ବୈଜ୍ଞାନିକଙ୍କ ଜୀବନୀ ନୁହେଁ ବରଂ ବୈଜ୍ଞାନିକ ଗବେଷଣା-ପରୀକ୍ଷାଗାରର କ୍ରିୟାକଳାପ, ଆବିଷ୍କାର ବା ଉଦ୍ଭାବନର ନକ୍ସା, ପରୀକ୍ଷା ସାମଗ୍ରୀ, ପରୀକ୍ଷାରେ ବ୍ୟବହୃତ ପ୍ରାଣୀ ଓ ତାର ମନସ୍ତତ୍ତ୍ୱ ପ୍ରଭୃତି ଅନାୟାସରେ ଉପଯୋଗ ହୋଇପାରନ୍ତି ।

ବେଳେବେଳେ ବୈଜ୍ଞାନିକ ଗଳ୍ପ ଓ ବିଜ୍ଞାନଭିତ୍ତିକ କାଳ୍ପନିକ ଗଳ୍ପ ମଧ୍ୟରେ ବିଶେଷ ଅନ୍ତର ରହେନାହିଁ । କାଳ୍ପନିକ ଗଳ୍ପର ସମ୍ଭାବନା ଭିତ୍ତିରେ ବୈଜ୍ଞାନିକ ଆବିଷ୍କ୍ରିୟାର ନବଦିଗନ୍ତ ଦୃଶ୍ୟମାନ ହୋଇପାରେ ।

ବୈଜ୍ଞାନିକ ଗଳ୍ପରେ ବିଜ୍ଞାନର ପାରିଭାଷିକ ଶବ୍ଦ, ପଦ, ତତ୍ତ୍ୱର ପ୍ରୟୋଗ ଅନିବାର୍ଯ୍ୟ ହୋଇଥିବାରୁ ଏବଂ ଏକ ଜଟିଳତତ୍ତ୍ୱ ବେଶ୍ କେତେକ ସରଳ-ଜଟିଳ ତତ୍ତ୍ୱ ଉପରେ ପ୍ରତିଷ୍ଠିତ ହୋଇଥିବାରୁ ସାଧାରଣ ପାଠକ ଏହାକୁ ସମ୍ପୂର୍ଣ୍ଣ ହୃଦୟଙ୍ଗମ କରିପାରେ ନାହିଁ । କିନ୍ତୁ ଗଳ୍ପନିହିତ ଅଦ୍ଭୁତତାରେ ପ୍ରଭାବିତ ହୋଇଥାଏ ।

## (୯) ଭୌତିକ ଗଳ୍ପ :

ପ୍ରାଣୀଜଗତର ଊର୍ଦ୍ଧ୍ୱରେ ଏକ ଅଶରୀରି ଜଗତ ରହିଛି ଓ ସେଠାରେ ଭୂତ, ପ୍ରେତ, ପିଶାଚ, ଡ଼ାଆଣୀ, ଚିରିଗୁଣୀ, ସଇତାନ, ବ୍ରହ୍ମରାକ୍ଷସ ଆଦି ଥା'ନ୍ତି ବୋଲି ଏକ ଧାରଣା ମାନବ ସମାଜରେ ଅଛି । ଏମାନେ ଅମୋକ୍ଷ ଆତ୍ମା ଏଣୁ ଏମାନଙ୍କ ଭାବ-ଭାବନା ମନୁଷ୍ୟଉପଯୋଗୀ । କେବଳ ଅଶରୀରି ଓ ସୂକ୍ଷ୍ମ ହୋଇଥିବାରୁ ଏମାନଙ୍କ କ୍ଷମତା ଅମାନବୀୟ । ଏମାନଙ୍କ ସମ୍ପର୍କରେ ମଣିଷର ଭୟ, କୌତୂହଳ ଓ ବିସ୍ମୟର ଅନ୍ତନାହିଁ । ଯେଉଁ ଗଳ୍ପ ଏହି ସୂକ୍ଷ୍ମ ଶରୀରଧାରୀ ବିଷୟରେ ଲିଖିତ ହୋଇଥାଏ ତାହାକୁ ଭୌତିକ ଗଳ୍ପ କୁହାଯାଏ ।

ଏ ଧରଣର ଗଳ୍ପରେ ଅଶରୀରିମାନଙ୍କ ଅତିକ୍ଷମତାର ଉପଯୋଗରେ ମଣିଷର ବସ୍ତୁଗତ-ଚୈତନିକ ଉନ୍ନତିବିଧାନଠାରୁ ଅପରଠାରେ ପ୍ରତିଶୋଧ ସାଧନ, ଅଲୌକିକ ଶକ୍ତିସାମର୍ଥ୍ୟ ଲାଭ, ହୃତରାଜ୍ୟ ପ୍ରାପ୍ତି, ବାଞ୍ଛିତା ନାରୀ ଲାଭ, ସାମୂହିକ କଲ୍ୟାଣ ଉଦ୍ଦେଶ୍ୟରେ ବିପଦସଙ୍କୁଳ ପଦକ୍ଷେପ ଗ୍ରହଣ ଇତ୍ୟାଦି ଉତ୍ତମ-ଅଧମ ମାନବୀୟ ଅଭୀପ୍ସାର ପୂର୍ତ୍ତି ପ୍ରଦର୍ଶିତ ହୋଇଥାଏ ।

ଉଭୟ କ୍ଷେତ୍ରରେ ବିପୁଳ ବିସ୍ମୟ, ରୋମାଞ୍ଚ, କୌତୂହଳ ଓ ଭୟ ପାଠକଙ୍କୁ ଉପଲଭ୍ୟ ହୁଏ । ସର୍ବୋପରି ଆନନ୍ଦ ଏହାର ଚୂଡ଼ାନ୍ତ ପରିଣତି ହୁଏ ।

ବେଳେବେଳେ ଉପଯୋଗଦୃଷ୍ଟିର ଭିନ୍ନତାରୁ ଭୌତିକ ଗଳ୍ପରେ ବୀଭତ୍ସତାର ପ୍ରାବଲ୍ୟ ପରିଲକ୍ଷିତ ହୁଏ । ଏଭଳି ଗଳ୍ପ ଘୃଣା, ତ୍ରାସ, ଭୟ, ଆତଙ୍କ ପରିବେଶଣ ସହ ପରିଣତିରେ ମାନସିକ ବିକଳନ ମଧ୍ୟ ଘଟାଇପାରେ । ଏଣୁ ଭୌତିକଗଳ୍ପ ବିସ୍ମୟୋଦ୍ଦୀପକ ହେବା ଉଚିତ ମାତ୍ର ଭୟପ୍ରଦ ହେବା ଉଚିତ ନୁହେଁ ।

ଭୌତିକଗଳ୍ପକୁ ଶିକ୍ଷଣୀୟ ସାମାଜିକ ଗଳ୍ପରେ ରୂପାନ୍ତରିତ କରିପାରିବା ଲେଖକୀୟ ପ୍ରତିଭାର ପରିଚାୟକ । ପ୍ରାଚୀନ କଥା-ସାହିତ୍ୟରେ 'ବେତାଳ ପଞ୍ଚବିଂଶତି' ଏହାର ଚମତ୍କାର ଉଦାହରଣ ।

## (୧୦) ରହସ୍ୟଭେଦମୂଳକ ଗଳ୍ପ :

ଯେଉଁ ଗଳ୍ପରେ ପ୍ରାକୃତିକ ଅଘଟଣର ଦୁର୍ଭେଦ୍ୟ ରହସ୍ୟ ଉନ୍ମୋଚନ କରିବାର ପ୍ରଯତ୍ନ କରାଯାଇଥାଏ ତାହାକୁ ରହସ୍ୟଭେଦମୂଳକ ଗଳ୍ପ କହିବା ଉଚିତ । ମାତ୍ର ଏହି ଶିରୋନାମ ଅତି ସଙ୍କୁଚିତ ଅର୍ଥରେ କେବଳ ସାମାଜିକ ଅଘଟଣ ଯଥା ହତ୍ୟା-ଅପହରଣ-ଚୋରୀ-ଡ଼କାୟତୀ-ଦୁର୍ଘଟଣା-ପ୍ରଭୃତିର ମର୍ମ୍ମଉଦ୍‌ଘାଟନ ଓ ଅପରାଧୀକୁ ସନାକ୍ତ କରୁଥିବା ଗଳ୍ପପାଇଁ ବ୍ୟବହୃତ ହୁଏ ।

ଏହାକୁ ଗୁଇନ୍ଦା ଗଳ୍ପ ବା ଡ଼ିଟେକ୍ଟିଭ୍ ଗଳ୍ପ କୁହାଯାଏ । ଯେଉଁ ସମାଜ ଯେତେ ଅସ୍ଥିର, ଜଟିଳ, ଉନ୍ନତ ଓ ସ୍ୱାଚ୍ଛନ୍ଦ୍ୟଯୁକ୍ତ ସେହି ସମାଜରେ ଏ ଧରଣର ଘଟଣାର ମାତ୍ରା ଅଧିକ । ତେଣୁ ସେଠାରେ ଏ ଧରଣର ଗଳ୍ପର ଉପାଦାନ ଓ ପରିମାଣ ଅଧିକ । ଏଣୁ ବିକଶିତ ପାଶ୍ଚାତ୍ୟଦେଶର ଡ଼ିଟେକ୍ଟିଭ୍ ଗଳ୍ପ ଅଧିକ ରହସ୍ୟ-ରୋମାଞ୍ଚଭରା, ଅଧିକ ଜଟିଳଗ୍ରନ୍ଥି ବିଶିଷ୍ଟ ଓ ଅଧିକ ଚାତୁର୍ଯ୍ୟପ୍ରକାଶକ୍ଷମ ।

ଗୁଇନ୍ଦା ଗଳ୍ପର ପରିସର ପରିବର୍ଦ୍ଧିତ ହେଲେ ରାଷ୍ଟ୍ର-ରାଷ୍ଟ୍ରର ରାଜନୀତି ଓ କୂଟନୀତି ଭିତ୍ତିରେ ପରସ୍ପର ଶାସନ ସମ୍ପର୍କୀୟ ଗୁପ୍ତଯୋଜନା ଅବଗତ ହେବାକୁ ପ୍ରାଣଘାତୀ ଦାୟିତ୍ୱ ସହିତ ଗୁଇନ୍ଦାର ଅଭିଯାନ ଏହାର ଅନ୍ତର୍ଗତ ହୁଏ । ରାଷ୍ଟ୍ରୀୟ କିମ୍ବା ବହୁରାଷ୍ଟ୍ରୀୟ ଯୁଦ୍ଧ କ୍ଷେତ୍ରରେ, ବିଶ୍ୱବିଖ୍ୟାତ ସ୍ମାରକୀ କ୍ଷେତ୍ରରେ, ପ୍ରାଚୀନ ମନ୍ଦିର-ମସ୍‌ଜିଦ୍ ଓ କଳାପୂର୍ଣ୍ଣ ଇମାରତ କ୍ଷେତ୍ରରେ, ମୂଲ୍ୟବାନ ଖଣିଖାଦାନ କ୍ଷେତ୍ରରେ କିମ୍ବା ପ୍ରାଚୀନ ରାଜବଂଶର ଗୁପ୍ତଧନ ସନ୍ଧାନ କ୍ଷେତ୍ରରେ ପ୍ରୟୋଗ ହୋଇଥିବା ଗୁଇନ୍ଦାଗିରି ଏହାର ଅନ୍ତର୍ବର୍ତ୍ତୀ । ଏଭଳି ଗଳ୍ପରେ ସାହସ, ସ୍ଥୈର୍ଯ୍ୟ, ଧୈର୍ଯ୍ୟ, ଚାତୁର୍ଯ୍ୟ, କାୟକ୍ଳେଶ ବରଣ କ୍ଷମତା ଓ ପ୍ରତ୍ୟୁତ୍ପନ୍ନମତିତା ତଥା ଶାରୀରିକ ଶକ୍ତିମତ୍ତାର ଉଦ୍‌ବୋଧନ ଘଟିଥାଏ । ଦେଶ-ଜାତି ଏପରିକି ବିଶ୍ୱମାନବତା ପାଇଁ ଗୁଇନ୍ଦାର ଆତ୍ମନିୟୋଜନ

ପାଠକକୁ ଦେଶପ୍ରେମରେ ଉଦ୍‌ବୁଦ୍ଧ କରାଏ ।

କିଶୋର ପାଠକ ପାଇଁ ଏଭଳି ଗଳ୍ପର ଗଠନମୂଳକ ଭୂମିକା ଅନସ୍ୱୀକାର୍ଯ୍ୟ । ତେବେ ଖଳନାୟକ ଦ୍ୱାରା ପ୍ରଭାବିତ ହେବା ଅନୁଚିତ ।

**(୧୧) ଆଞ୍ଚଳିକ ଗଳ୍ପ :**

ଯେଉଁ ଗଳ୍ପରେ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ଭୂଗୋଳ ସହିତ ସେଠାକାର ଜନଜୀବନର ସ୍ୱାତନ୍ତ୍ର୍ୟ ମୂର୍ତ୍ତ ହୋଇଥାଏ ତାହାକୁ ଆଞ୍ଚଳିକ ଗଳ୍ପ କୁହାଯାଏ । ଆଞ୍ଚଳିକ ଗଳ୍ପରେ ଗୃହୀତ ଅଞ୍ଚଳର ବିଶେଷ ଜୀବନରୀତି, ଚଳଣୀ, ସାଂସ୍କୃତିକ ଜିଜ୍ଞାସା, ଧର୍ମୀୟ ଆଚରଣ, ପ୍ରଥା-ପରମ୍ପରା ଓ ପ୍ରକୃତି ପ୍ରତି ଦୃଷ୍ଟିକୋଣ ଏବଂ ମାନବୀୟ ବ୍ୟବହାର ରୂପପାଇଥାଏ । ତାହାର ରୂପନ୍ୟାସ ସହିତ ବୈଶିଷ୍ଟ୍ୟ ପ୍ରକଟ ଆଞ୍ଚଳିକ ଗଳ୍ପର ଉଦ୍ଦେଶ୍ୟ ।

ବେଳେବେଳେ ବୃହତ୍ତର ସମାଜପ୍ରେକ୍ଷାରେ ଆଞ୍ଚଳିକତାର ତୁଳନା ଓ ଆଞ୍ଚଳିକ ଚରିତ୍ରର ମହତାକାଙ୍‌କ୍ଷା କିମ୍ବା ବିମର୍ଷ ଅନୁଶୋଚନା ଆଞ୍ଚଳିକ ଗଳ୍ପର ବିଷୟ ହୋଇଥାଏ ।

ଆଞ୍ଚଳିକ ଗଳ୍ପର ପ୍ରକୃତିଚିତ୍ରର ବିଶ୍ୱସ୍ତତା ଦେବାକୁ ଯାଇ ବାସ୍ତବବାଦୀ ଭାବଧାରା ଅନୁବର୍ତ୍ତନ କରାଯାଏ । ଆଞ୍ଚଳିକ ପ୍ରକୃତିଚିତ୍ର ପୁଙ୍ଖାନୁପୁଙ୍ଖ, ସତ୍ୟଶୀଳ, ଜୀବନ୍ତ ଏବଂ ଚିତ୍ରାତ୍ମକ ହେବା ଉଚିତ । ଅନ୍ୟଥା ତଦୀୟ ଜୀବନଧାରାର ବିଶେଷତ୍ୱର ହେତୁ ନିର୍ଣ୍ଣିତ ହୋଇପାରେ ନାହିଁ ।

ଏଭଳି ଗଳ୍ପ ଜରିଆରେ ସଂକୁଚିତ ଆଞ୍ଚଳିକତାର କୌଣସି ବିଶେଷତ୍ୱକୁ ସାର୍ବଜନୀନ ଓ ସାର୍ବିକ କରାଇପାରିବା ଗଳ୍ପକାରଙ୍କ କୃତିତ୍ୱ ସାବ୍ୟସ୍ତ କରେ । ଏ ପ୍ରକାର ଗଳ୍ପରେ ପ୍ରାମାଣିକ ଉପାଦାନ ସଂଯୋଗ ନହେଲେ ଗଳ୍ପ ବିଶ୍ୱସ୍ତ ହୋଇପାରେ ନାହିଁ ।

ଆଞ୍ଚଳିକ ଗଳ୍ପ ସେହି ଅଞ୍ଚଳର ଗାଳ୍ପିକଙ୍କ ଦ୍ୱାରା ରଚିତ ହେଲେ ଅଧିକ ତଥ୍ୟ ଓ ଜୀବନନିଷ୍ଠ ହୁଏ ।

**(୧୨) କ୍ଷେତ୍ରୀୟ ଗଳ୍ପ :**

କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନକୁ ମୁଖ୍ୟ ଚରିତ୍ର ବା କଥା ବସ୍ତୁର ପ୍ରାଣକେନ୍ଦ୍ର ଭାବେ ଗ୍ରହଣ କରି ଯେଉଁ ଗଳ୍ପ ରଚିତ ହୁଏ ତାହାକୁ ସ୍ଥାନିକ କିମ୍ବା କ୍ଷେତ୍ରୀୟ ଗଳ୍ପ କୁହାଯାଏ ।

ଏ ପ୍ରକାର ଗଳ୍ପରେ ସ୍ଥାନ ହିଁ ମୁଖ୍ୟ । ସ୍ଥାନର ସ୍ୱାତନ୍ତ୍ର୍ୟ, ବିଶେଷତ୍ୱ, ମହତ୍ତ୍ୱ ଅଥବା ଅନନ୍ୟତା ଭିତ୍ତିରେ କଥାବସ୍ତୁର ଜନ୍ମ ଓ ବିକାଶ ଘଟିଥିବା ବାଞ୍ଛନୀୟ ।

ଏହି ସ୍ଥାନ ପର୍ବତ ଉପତ୍ୟକା, ମାଳ, ଉପକୂଳ, ବନ, ତୀର୍ଥକ୍ଷେତ୍ର, ଯୁଦ୍ଧକ୍ଷେତ୍ର, ଦର୍ଶନୀୟ ସ୍ଥାନ, ବିଦେଶ ବା ଦେଶର ନଗରୀ, ଶିଳ୍ପ ନଗର, ଶିଳ୍ପାଞ୍ଚଳ, ଦୀର୍ଘକାଳିକ

ନିର୍ମାଣାଧୀନ କୌଣସି ଯୋଜନାନ୍ତର୍ଗତ ଶିବିର, ସୀମାନ୍ତବର୍ତ୍ତୀ ଇଲାକା, ବତୀଘର, ଟାପୁ, ଦ୍ୱୀପ ପ୍ରଭୃତି ଯେ କୌଣସିଟି ହୋଇପାରେ । ମାତ୍ର ଗଳ୍ପର କଥାବସ୍ତୁ ଏହି କ୍ଷେତ୍ରରେ ସୀମାୟିତ ହେବାକୁ ବାଧ ।

ସ୍ଥାନର ବିଶେଷ ଚିତ୍ରଣ ସହିତ ସ୍ଥାନସଂପୃକ୍ତ ମଣିଷର ସମସ୍ୟା ଓ ସମସ୍ୟାରୁ ଉତ୍ତୀର୍ଣ୍ଣ ହେବାର ସଂଗ୍ରାମ, ସର୍ବୋପରି ତା'ର ମନସ୍ତତ୍ତ୍ୱର ବୀକ୍ଷଣ ଏ ପ୍ରକାର ଗଳ୍ପରେ ରୂପାୟିତ ହୁଏ ।

## (୧୩) କାଳ୍ପନିକ ଗଳ୍ପ :

ଗଳ୍ପମାତ୍ରକେ କଳ୍ପନା ସଂଯୁକ୍ତ; ମାତ୍ର ସବୁଗଳ୍ପ କାଳ୍ପନିକ ଗଳ୍ପ ନୁହେଁ । ଯେଉଁ ଗଳ୍ପ ବାସ୍ତବଜୀବନ ସହ ଅସଂପୃକ୍ତ, ଯାହାର କାଳଗତ ଓ ପାତ୍ରଗତ ସୀମା ନିର୍ଦ୍ଧାରଣ ରହିତ ତାହାକୁ କାଳ୍ପନିକ ଗଳ୍ପ କୁହାଯାଏ ।

ଏଭଳି ଗଳ୍ପ ରାଜାରାଣୀ ଥାଇ ମଧ୍ୟ ଐତିହାସିକ ନୁହେଁ, ଅଲୌକିକତା ଥାଇ ମଧ୍ୟ ଉଦ୍ଭଟ ନୁହେଁ, ବିଜ୍ଞାନ ପ୍ରସଙ୍ଗ ଥାଇ ସୁଦ୍ଧା ବୈଜ୍ଞାନିକ ନୁହେଁ, ଦର୍ଶନ ଥାଇ ସୁଦ୍ଧା ଦାର୍ଶନିକ ନୁହେଁ । ଏହିପରି ଏହା ମନସ୍ତାତ୍ତ୍ୱିକ, କିମ୍ବା ଲୌକିକ କିମ୍ବା ସାମାଜିକ କୌଣସି ଏକ ଧାରା ପ୍ରତି ନମନୀୟ ନୁହେଁ । ବରଂ ଏହା ଏକ ସ୍ୱୟଂସଂପୂର୍ଣ୍ଣ ଧାରା ।

ଏ ପ୍ରକାର ଗଳ୍ପ ମୁକ୍ତ, ସଂପ୍ରସାରଣକ୍ଷମ, ନମନୀୟ । ଏଥିରେ ଯେକୌଣସି ପ୍ରସଙ୍ଗ, ଚରିତ୍ର, ଦର୍ଶନ ପ୍ରକାଶ ପାଇପାରେ । ଏହା ସ୍ଥାନ-କାଳ-ପାତ୍ର ଗତ ସୁସମତା ପ୍ରତି ଅବଧାନ ରହିବାକୁ ବାଧ ନୁହେଁ ।

ମାତ୍ର ଏ ଧରଣର ଗଳ୍ପ ପାଠକର ବିସ୍ମୟ, କୌତୂହଳ, ଜିଜ୍ଞାସା ଓ ଉଦ୍‌ଗମୀକ୍ଷା ବୃଦ୍ଧିରେ ସହାୟକ ହୁଏ । ବସ୍ତୁତଃ ସାମାଜିକ ସମସ୍ୟାକୁ ସମାଜଭୂମି ଊର୍ଦ୍ଧ୍ୱରେ ସ୍ଥାପିତକରି ବିଚାର କରିବା ଓ ସମାଧାନର ଇଙ୍ଗିତ ଦେବା ଏହି ଗଳ୍ପରୀତିର ବୈଶିଷ୍ଟ୍ୟ ।

## (୧୪) ଯୁଦ୍ଧ ଭିତ୍ତିକ ଗଳ୍ପ :

ଯେଉଁ ଗଳ୍ପର ମୁଖ୍ୟ ପ୍ରସଙ୍ଗ ଯୁଦ୍ଧ, ମୁଖ୍ୟ ଚରିତ୍ର ଯୋଦ୍ଧା, କ୍ଷେତ୍ର ଯୁଦ୍ଧକ୍ଷେତ୍ର କିମ୍ବା ଯୁଦ୍ଧ ଶିବିର, ପରିଣତି ଯୁଦ୍ଧଜୟ ବା ଯୁଦ୍ଧହାର ତାହାକୁ ଯୁଦ୍ଧଭିତ୍ତିକ ଗଳ୍ପ ବା ସମରଗଳ୍ପ କୁହାଯାଏ ।

ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ କିମ୍ବା ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ସଙ୍ଘଟିତ ଯୁଦ୍ଧ ଯେଉଁ ପରିଣତିରେ ପହଞ୍ଚୁ ନା କାହିଁକି ତହିଁରେ ପ୍ରତିଫଳିତ ହେଉଥିବା ନାରକୀୟ ହତ୍ୟା, ପୈଶାଚିକ ସଂହାରଲୀଳା, ଅଭୂତ ବୀରତ୍ୱ, ପ୍ରଚଣ୍ଡ ସାହସ, ଦୁର୍ଦ୍ଦମନୀୟ, ପ୍ରତିଶୋଧେଚ୍ଛା ଓ କୁଶଳୀ ଶସ୍ତ୍ରଚାଳନା ପାଠକ ପ୍ରାଣରେ ଯୁଦ୍ଧବାସ୍ତବତା ଜନ୍ମାଏ ଏବଂ ବିଶ୍ୱକୁ ଯୁଦ୍ଧମୁକ୍ତ ଦେଖିବାର ପ୍ରବଣତା ପାଠକଠାରେ ଜାଗ୍ରତ କରାଏ ।

ଯୁଦ୍ଧଗଳ୍ପରେ ଦେଶପ୍ରେମ ଯେମିତି ମାନ୍ୟତା ଓ ପ୍ରାଧାନ୍ୟ ପାଇଥାଏ ସେମିତି ବିଜୟ ହିଁ ଯୁଦ୍ଧର ଲକ୍ଷ୍ୟ ବୋଲି ଘୋଷିତ ମଧ ହୋଇଥାଏ । ଏ ପ୍ରକାର ଗଳ୍ପ ବାସ୍ତବ ସଙ୍ଘଟିତ କୌଣସି ଯୁଦ୍ଧର ଚାକ୍ଷୁଷ ବର୍ଣ୍ଣନା ହେବା ଭଲ । ଯୁଦ୍ଧ ସାମ୍ବାଦିକ, ରେଡକ୍ରସ୍ ସ୍ୱେଚ୍ଛାସେବୀମାନଙ୍କ ଦ୍ୱାରା କିମ୍ବା ସେମାନଙ୍କ ଦିନଲିପି ଆଧାରରେ ରଚିତ ହେଲେ ଏ ପ୍ରକାର ଗଳ୍ପ ଉତ୍ତୀର୍ଣ୍ଣ ହୁଏ ।

ଏ ଧରଣର ଗଳ୍ପରେ ଯୁଦ୍ଧ ବ୍ୟବହୃତ ଅସ୍ତ୍ରଶସ୍ତ୍ର, ବିମାନ-ଗାଡି, ଗୁଳିଗୋଳା, କୋଡ୍ ୱାର୍ଡ, ଚିକିତ୍ସା-ଔଷଧ, ଟ୍ରେଞ୍ଚ୍, ବ୍ଲାକ୍ଆଉଟ୍ ପ୍ରଭୃତି ବିଭିନ୍ନ ପ୍ରସଙ୍ଗରେ ଲେଖକଙ୍କର ଯଥେଷ୍ଟ ଜ୍ଞାନ ଥିବା ଦରକାର । ସର୍ବୋପରି ଏ ପ୍ରକାର ଗଳ୍ପରେ ଯୁଦ୍ଧବିରୋଧୀ ତତ୍ତ୍ୱଥିଲେ ଅଧିକ ଗ୍ରାହ୍ୟ ହୁଏ ।

ସମରଗଳ୍ପ ଘଟଣା ପ୍ରଧାନ ହେଲେହେଁ ବେଳେବେଳେ କେହି କେହି ସାମରିକ ଚରିତ୍ର ଆପଣା କୃତିତ୍ୱବଳରେ ବିଖ୍ୟାତ ଓ ସ୍ମରଣୀୟ ହୋଇଯାନ୍ତି ।

## (୧୫) ପର୍ଯ୍ୟଟନ ଭିତ୍ତିକ ଗଳ୍ପ :

ଯେଉଁ ଗଳ୍ପରେ ପର୍ଯ୍ୟଟନ, ତୀର୍ଥାଟନ, ଭ୍ରମଣ ଓ ବିହାର କ୍ରମରେ ଦୂର ଯାତ୍ରାର ଅନୁଭୂତି ଏବଂ ସଂପୃକ୍ତ ସ୍ଥାନର ବିଶେଷତ୍ୱ ବିଜ୍ଞପିତ ହୋଇଥାଏ ତାହାକୁ ପର୍ଯ୍ୟଟନ ଭିତ୍ତିକଗଳ୍ପ କୁହାଯାଏ ।

ଏପ୍ରକାର ଗଳ୍ପ ଡ଼ାଇରୀଧର୍ମୀ, ପତ୍ରଲିଖନ-ଧର୍ମୀ କିମ୍ବା ବର୍ଣ୍ଣନାଧର୍ମୀ ରୀତିରେ ରଚିତ ହୁଏ । ଏଥିରେ ଅନୁଭୂତିର ସତ୍ୟତା ସହିତ ଅନୁଭବର କଳାତ୍ମକ ପ୍ରକାଶପାଇଁ ସୁଯୋଗ ଅବାରିତ ଥାଏ । ଏଣୁ ଏହା ଆନନ୍ଦଦାୟୀ, ପ୍ରେରଣାଦାୟୀ, ତଥ୍ୟଦାୟୀ ସର୍ବୋପରି ଚିତ୍ରଦାୟୀ ହୋଇଥାଏ ।

ପର୍ଯ୍ୟଟନଭିତ୍ତିକ ଗଳ୍ପ ପୁଣି ପର୍ଯ୍ୟଟନ କାଳୀନ କୌଣସି ବିରଳ ଘଟଣା-ଦୃଶ୍ୟ-ଚରିତ୍ର କିମ୍ବା ମନୋଭାବ ଆଧାରରେ ରଚିତ ହୋଇପାରେ । ସେଭଳି ଗଳ୍ପରେ ସ୍ଥାନ-କାଳକୁ ସୂଚୀତ କରିବା ପାଇଁ ଯେତିକି ତଥ୍ୟ ଆବଶ୍ୟକ ତାହା ବ୍ୟତୀତ ପର୍ଯ୍ୟଟନ ସମ୍ପର୍କୀୟ କୌଣସି ଅଧିକ ତଥ୍ୟ ଅନୁପଯୋଗୀ ।

ବିଦେଶ ପଟ୍ଟଭୂମିରେ ରଚିତ ଗଳ୍ପଗୁଡ଼ିକୁ ପର୍ଯ୍ୟଟନ ଭିତ୍ତିକ ଗଳ୍ପ ମଧ କୁହାଯାଏ । ମାତ୍ର ଦେଶ ଓ ବିଦେଶର ତୁଳନାତ୍ମକ ଚିତ୍ର ପ୍ରଦାନ କରି କାହାର ବୈଶିଷ୍ଟ୍ୟ ପ୍ରତିପାଦିତ କରୁଥିବା ଗଳ୍ପ ପର୍ଯ୍ୟଟନଗଳ୍ପ ହୋଇପାରେ ନାହିଁ ।

ସ୍ୱ-ସ୍ଥିତିରେ ଥାଇ ସ୍ଥାନାନ୍ତର ଭ୍ରମଣର ରୋମାଞ୍ଚ ଲାଭରେ ପର୍ଯ୍ୟଟନ ଭିତ୍ତିକ ଗଳ୍ପର ଅବଦାନ ଅତୁଳନୀୟ । ଏଣୁ ଏହା ପାଠକୀୟ ପ୍ରିୟତା ଲାଭରେ ଅପ୍ରତିଦ୍ୱନ୍ଦୀ ।

## (୧୬) ଦୁଃସାହସିକ ଅଭିଯାନମୂଳକ ଗଳ୍ପ :

ପର୍ଯ୍ୟଟନ ପରି ମାତ୍ର ବିପଦସଙ୍କୁଳ ଓ ପରିଣତିଅନିଶ୍ଚିତ ଦୀର୍ଘଯାତ୍ରା ଭିତ୍ତିକ ଅନୁଭୂତି ଆଧାରରେ ରଚିତ ଗଳ୍ପକୁ ଦୁଃସାହସିକ ଅଭିଯାନମୂଳକ ଗଳ୍ପ କୁହାଯାଏ ।

ଏଭଳି ଗଳ୍ପରେ ପର୍ଯ୍ୟଟନ ସୁଲଭ ସମସ୍ତ ଲକ୍ଷଣ ସହିତ ଅଧିକନ୍ତୁ ଥାଏ ଜୀବନତ୍ରାସର ଆଶଙ୍କା ଓ ଆବିଷ୍କାର ଅଥବା ମାନବକଲ୍ୟାଣ ସାଧନ ବ୍ରତ ଜନିତ ଆନନ୍ଦବୋଧ । ଅଭିଯାନ ନେପଥ୍ୟରେ ଥିବା ପ୍ରଚ୍ଛନ୍ନ ଗୌରବବୋଧ ଗଳ୍ପଚରିତ୍ରକୁ ଉଜ୍ଜ୍ୱଳତା ମଣ୍ଡିତ କରୁଥିବା ସତ୍ତ୍ୱେ ଗର୍ବପ୍ରକଟ କରୁନଥିବା ଏବଂ ସହ-ଅଭିଯାତ୍ରୀ ପ୍ରତି ଉଚିତ ବ୍ୟବହାର ପ୍ରଦର୍ଶନ କରୁଥିବାର ଚିତ୍ର ପ୍ରକଟିତ ହେଉଥିବା ଗଳ୍ପ ସଫଳ ଗଳ୍ପର ମର୍ଯ୍ୟାଦାପାଏ ।

ଏହିଧରଣର ଗଳ୍ପରେ ମଧ୍ୟ ଚରିତ୍ରର ଡ଼ାଇରୀ, ଚିଠିପତ୍ର, ଇଚ୍ଛାପତ୍ର ଓ ବିବରଣୀ ପ୍ରାମାଣିକ ଉପାଦାନ ଭାବେ ବ୍ୟବହୃତ ହୁଏ । ଏହା ଗଳ୍ପକୁ ବିଶ୍ୱସନୀୟତା ପ୍ରଦାନ କରେ ।

ଏ ପ୍ରକାର ଗଳ୍ପରେ ସ୍ୱାନୁଭବ ହିଁ ମୁଖ୍ୟ ହୋଇଥିବାରୁ ଲେଖକ-ଚରିତ୍ର ଏକାକାର ହେବାକୁ ବାଧ୍ୟ । କୌଣସି କଥାକାର ଅପରର ଅଭିଜ୍ଞତା ଭିତ୍ତିରେ ଏ ପ୍ରକାର ଗଳ୍ପ ରଚନା କରିପାରିବା ଅସମ୍ଭବ ।

## (୧୭) ଜୀବନୀମୂଳକ ଗଳ୍ପ :

ଯେଉଁ ଗଳ୍ପରେ ସ୍ୱୟଂ ଲେଖକଙ୍କ କିମ୍ବା କୌଣସି ବିଶିଷ୍ଟ ବ୍ୟକ୍ତିବିଶେଷଙ୍କ ଜୀବନର ଚମତ୍କାର, ଶିକ୍ଷଣୀୟ, ଆଦର୍ଶଯୁକ୍ତ ଓ ପ୍ରେରଣାପ୍ରଦ ଘଟଣା ଅବଲମ୍ବନ ହୋଇଥାଏ ତାହାକୁ ଜୀବନୀମୂଳକ ଗଳ୍ପ କୁହାଯାଏ ।

ସ୍ୱୟଂ ଲେଖକଙ୍କ ଜୀବନୀଅଂଶ ଗର୍ଭିତ ଗଳ୍ପକୁ ଆତ୍ମଜୀବନୀମୂଳକ ଗଳ୍ପ କୁହାଯାଏ । ଜୀବନୀ ମୂଳକ ଗଳ୍ପ କିନ୍ତୁ ଏକାବେଳକେ ଜୀବନୀର ଗଳ୍ପୋଚିତ ଦୀର୍ଘ ଅଂଶ ନୁହେଁ । ତାହା ଗଳ୍ପସୁଲଭ ବର୍ତ୍ତୁଳ କଥାଭାଗ ବିଶିଷ୍ଟ ହେବା ଉଚିତ ।

ଜୀବନୀ ହେଉ ବା ଆତ୍ମଜୀବନୀ ଉଭୟ କ୍ଷେତ୍ରରେ ଗଳ୍ପ ଉପାଦାନ ଭାବେ ଯେଉଁ ଅଂଶ ଉପଯୋଗ ହୁଏ ତାହା ପାଠକର ରସବୋଧ ଓ ପ୍ରଜ୍ଞାକୁ ସ୍ପର୍ଶ କରିବା ଉଚିତ । ତାହା କେବଳ କୌତୂହଳୋଦ୍ଦୀପକ ଓ ବିସ୍ମୟକର ହେବା ଯଥେଷ୍ଟ ନୁହେଁ ।

ଜୀବୀର ଜୀବନୀକୁ ନୂତନ ଦିଗନ୍ତ ଦେବାରେ ଏବଂ ଗଳ୍ପ ଆକାରରେ ବୃହତ୍ତର ପାଠକ ଗୋଷ୍ଠୀ ନିକଟରେ ଜୀବୀକୁ ପରିଚିତ କରାଇବାରେ ଜୀବନୀମୂଳକ ଗଳ୍ପର ଭୂମିକା ଗୁରୁତ୍ୱପୂର୍ଣ୍ଣ ।

ଜୀବନୀମୂଳକ ଗଳ୍ପରୁ ତଥ୍ୟର ନିର୍ବାସନ ଗଳ୍ପକୁ ଅଧିକ ଗଳ୍ପୀୟ ସାର୍ଥକତା

ପ୍ରଦାନକରେ ମାତ୍ର ପ୍ରାମାଣିକତା ହରାଏ । ବେଳେବେଳେ ଏହା ନୀରସ ଏବଂ ବିବରଣାକ୍ରାନ୍ତ ବିରସ ମନେହୁଏ ।

## (୧୮) ପାରିବାରିକ ଗଳ୍ପ :

ଯେଉଁ ଗଳ୍ପରେ ପାରିବାରିକ ଜୀବନର ବିଭିନ୍ନ ଦିଗ ଯଥା ତାହାର ଅଶ୍ରୁ, ହାସ୍ୟ, ପୁଲକ; ତ୍ରୁଟି, ବିଚ୍ୟୁତି, ରାଗ, ବିରାଗ; ପ୍ରାପ୍ତି, ଅପ୍ରାପ୍ତି, ପ୍ରତ୍ୟାଶା, ପ୍ରତାରଣା; ଆଦର, ଅନୁରାଗ, ସ୍ନେହ, ପ୍ରୀତି; ଈର୍ଷା, ଦ୍ୱେଷ, ସ୍ୱାର୍ଥପରତା ଓ ଅସହିଷ୍ଣୁତା ଏବଂ ତ୍ୟାଗ, କ୍ଷମା, ଦୟା, ସେବା ପ୍ରଭୃତି କୌଣସିଟି କିମ୍ୱା କେତୋଟି ଅନୁଭବ ଆଧାରୀଭୂତ ହୋଇଥାଏ ତାହାକୁ ପାରିବାରିକ ଗଳ୍ପ କୁହାଯାଏ ।

ଏ ପ୍ରକାର ଗଳ୍ପର କଥାବସ୍ତୁ ପରିବାର କୈନ୍ଦ୍ରିକ ହୋଇଥାଏ । ପରିବାର ବାହାରର ସମସ୍ୟା ହୋଇଥିଲେ ତାହା ପରିବାର କ୍ଷେତ୍ରରେ ସୃଷ୍ଟି କରିଥିବା ପ୍ରତିକ୍ରିୟା ଭିତ୍ତିରେ ହିଁ ଗଳ୍ପ ସଂରଚିତ ହୁଏ । ସମଗ୍ର ବିଶ୍ୱସମସ୍ୟା ହେଲେ ସୁଦ୍ଧା ତାହା ଯଦି ପରିବାର ପରିସରରେ ଏବଂ ପାରିବାରିକ ଚରିତ୍ର କ୍ଷେତ୍ରରେ ଘଟୁଥାଏ ତେବେ ତାହା ପାରିବାରିକ ଗଳ୍ପ ବୋଲାଇଥାଏ ।

ପାରିବାରିକ ଗଳ୍ପର ସନ୍ଦେଶ ସାମାଜିକ କ୍ଷେତ୍ରରେ ସୁଦ୍ଧା ଉପଯୋଗୀ ହୋଇପାରେ । ଏ ପ୍ରକାର ଗଳ୍ପକୁ ଦାମ୍ପତ୍ୟ ଗଳ୍ପ, ଗାର୍ହସ୍ଥ୍ୟ ଗଳ୍ପ ଇତ୍ୟାଦି କୁହାଯାଏ; ମାତ୍ର ପାରିବାରିକ ଗଳ୍ପ ଏହାର ଉପଯୁକ୍ତ ନାମ ।

## (୧୯) ବୈୟକ୍ତିକ ଗଳ୍ପ :

ଯେଉଁ ଗଳ୍ପରେ ବ୍ୟକ୍ତିର ଚିତ୍ରଣ ହୋଇଥାଏ ତାହା ବୈୟକ୍ତିକ ଗଳ୍ପ । ଯଦିଓ ସବୁ ଗଳ୍ପ-ଚରିତ୍ରକୁ (ମଣିଷ) ଆମେ ଗଳ୍ପ-ବ୍ୟକ୍ତି କହିପାରିବା ତଥାପି 'ବ୍ୟକ୍ତି' ଶବ୍ଦରେ ସବୁ ମଣିଷ ପ୍ରତୀକିତ ହୁଅନ୍ତି ନାହିଁ । 'ମଣିଷ' କହିଲେ ନିଖିଳ ମାନବୀୟତ୍ୱ ଠାରୁ ନିଜର ସାମାଜିକତାରେ ଆବଦ୍ଧ ଏକ ସତ୍ତାକୁ ବୁଝିବା । ସିଏ ଏକ ରାଷ୍ଟ୍ରର ସଦସ୍ୟ, ଏକ ଧର୍ମର ଅନୁସାରୀ, ଏକ ଜାତିର ବଂଶଧର, ଏକ ଅଞ୍ଚଳର ବାସିନ୍ଦା, ଏକ ଘରର ଗୃହସ୍ଥ, ଏକ ସ୍ୱାମୀ, ପୁତ୍ର, ବାପା ଇତ୍ୟାଦି ସଂପର୍କୀୟ, ହୋଇଥାଏ । ଯିଏ କୌଣସି ଦ୍ୱିତୀୟ ପରିଚୟରେ ଚିହ୍ନିତ ହୁଏନାହିଁ; ଅର୍ଥାତ୍ ମଣିଷର ମୌଳିକ ପରିଚୟ ହେଉଛି ସେ-'ବ୍ୟକ୍ତି' ।

'ବ୍ୟକ୍ତି' ଭାବରେ ସମାଜ, ଶାସ୍ତ୍ର, ସଂସ୍କୃତି ଏବଂ ପରିବେଶ କିମ୍ୱା କୌଣସି ଅନୁଷ୍ଠାନ ପ୍ରତି ସେ ଦାୟବଦ୍ଧତାରୁ **ମୁକ୍ତ** । ତାହାର ଚେତନାନ୍ତରରେ ଏଣୁ କୌଣସି **ନୀତି-ନିୟମ-ଅନୁଶାସନ-ପ୍ରାକ୍‌ସ୍ଥିର ଧାରଣା** ପ୍ରତି ଆନୁଗତ୍ୟ ରହି ନଥାଏ । ସେ ତାର

ଚାରିତ୍ରିକତାରେ ଏକାବେଳକେ ସ୍ୱତନ୍ତ୍ର । ତାର କାର୍ଯ୍ୟ ଏତେ ମୌଳିକ ଯେ, ତାହା ସମୀକ୍ଷାର ଊର୍ଦ୍ଧ୍ୱରେ ।

ବ୍ୟକ୍ତିବାଦୀ ଚିନ୍ତାଧାରା ବିଶ୍ୱଯୁଦ୍ଧୋତ୍ତର କାଳରେ ସୃଷ୍ଟି ହୁଏ । ଗଳ୍ପରେ ବ୍ୟକ୍ତିଚେତନା ଓ ବ୍ୟକ୍ତି ଚରିତ୍ରର ପ୍ରୟୋଗ ବିଂଶ ଶତକର ଅବଦାନ ।

ବୈୟକ୍ତିକ ଗଳ୍ପରେ ଚରିତ୍ରର ଏକାନ୍ତ ନିଜସ୍ୱ ଭାବ-ଭାବନା, ଇଚ୍ଛା-ଆସ୍ପୃହା, ଦୃଷ୍ଟିଭଙ୍ଗୀ, ବିଚାର, ଦର୍ଶନ ଓ ଆବେଗ ପ୍ରକଟିତ ହୁଏ । ତାହାର କାର୍ଯ୍ୟ ଓ ଚିନ୍ତା ଅନ୍ୟ ଦୃଷ୍ଟିରେ ଯେତେ ବନ୍ଦିତ ବା ନିନ୍ଦିତ ହେଉ ନା କାହିଁକି ସେଥିପ୍ରତି ସେ ସମ୍ପୂର୍ଣ୍ଣ ଉଦାସୀନ ରହେ ।

ଏ ପ୍ରକାର ଗଳ୍ପ ଆଦର୍ଶବାଦ ମୁକ୍ତ, ଧରାବନ୍ଧାଗତ ମୁକ୍ତ ଏବଂ ନୂତନ, ସ୍ୱାଧୀନ, ଅଭିନବ ତଥା ସତେଜ ହୋଇଥାଏ । ଏଥିରେ ସମସାମୟିକ ଯୁଗରୁଚି ଅନାବୃ ହୋଇ ପ୍ରତିଫଳିତ ହୋଇଥାଏ । ବ୍ୟକ୍ତିର ମୁକ୍ତ ଚିନ୍ତାକୁ ପ୍ରଶ୍ରୟ ଦେଉଥିବାରୁ ଏଥିରେ ସମୟସମୟରେ ଅଭୂତପୂର୍ବ ଏବଂ ଅନାକାଙ୍କ୍ଷିତ ପ୍ରସଙ୍ଗ ଉପସ୍ଥିତ ହୋଇଯାଏ ।

ପାଠକର ରକ୍ଷଣଶୀଳ ଚେତନା ଓ ପାରମ୍ପରିକ ଧାରଣା ବିଡ଼ମ୍ବିତ ହେଉଥିବାରୁ, ସମାଜ ଅବଧାରଣାରେ ସହାୟକ ହେଉନଥିବାରୁ ସର୍ବୋପରି ଗର୍ଭିତ ଚରିତ୍ରର ଅନୁଭୂତିର ବ୍ୟକ୍ତିଗତତା ହେତୁ ସାଧାରଣ ପାଠକ ଏ ପ୍ରକାର ଗଳ୍ପକୁ ଆଦର କରିପାରେନାହିଁ ।

ମାତ୍ର ଏ ଧରଣର ଗଳ୍ପ ମଣିଷର ଅନୁଭାବନାରେ ଆସୁଥିବା ସମସ୍ତ ସୀମା ଓ ସମ୍ଭାବନାକୁ ଉତ୍ତୀର୍ଣ୍ଣ ହୋଇଯାଇପାରୁଥିବାରୁ ପାଠକକୁ ଏକ ଚୈତନିକ ଉତ୍ତୋଳନ ଦିଆଇପାରେ । ସେହି ଦୃଷ୍ଟିରୁ ଏ ଧରଣର ଗଳ୍ପ ତରୁଣ ପାଠକଙ୍କ ପ୍ରିୟତା ମଧ୍ୟ ଲାଭକରେ ।

## (ଖ) ଦର୍ଶନ ଦୃଷ୍ଟିରୁ :

**ଦର୍ଶନ ଦୃଷ୍ଟିରୁ କ୍ଷୁଦ୍ରଗଳ୍ପର ବିଭିନ୍ନ ପ୍ରକାର ନିର୍ଣ୍ଣିତ** ହୋଇପାରେ; ଯଥା - (୧) ବାସ୍ତବବାଦୀ (୨) ଅତିବାସ୍ତବବାଦୀ (୩) ପ୍ରଗତିବାଦୀ (୪) ଫ୍ରଂୟେଡ୍‌ବାଦୀ (୫) ଅସ୍ତିତ୍ୱବାଦୀ (୬) ସ୍ୱଚ୍ଛନ୍ଦତାବାଦୀ (୭) ମାନବତାବାଦୀ (୮) ସମାଜବାଦୀ (୯) ପ୍ରତୀକବାଦୀ (୧୦) ସ୍ୱୈରବାଦୀ (୧୧) ଚିରାୟତବାଦୀ ।

(୧) ଯେଉଁ ଗଳ୍ପରେ ବାସ୍ତବବାଦୀ ଭାବଧାରା ପ୍ରଯୁକ୍ତ ହୋଇଥାଏ ତାହା **ବାସ୍ତବବାଦୀ** ଗଳ୍ପ । ଏଥିରେ ଭୌତିକ ବାସ୍ତବତା ଯଥା ପ୍ରାକୃତିକ ବିପର୍ଯ୍ୟୟ, ମାନବୀୟ ବିପର୍ଯ୍ୟୟ ଭଳି ଦୃଶ୍ୟ ଓ ଘଟଣାଗତ ଏବଂ ମନସ୍ତାତ୍ତ୍ୱିକ ବାସ୍ତବତା ଯଥା ନୈତିକ-ଆଧ୍ୟାତ୍ମିକ-ବୈୟକ୍ତିକ ଚେତନାସଙ୍ଘାତ ଭଳି ଅନୁଭୂତି ଓ ଉପଲବ୍ଧି

ରୂପାୟିତ ହୁଏ । ଯାହା ସତ୍ୟ ଓ ବାସ୍ତବ ତାହାର ଅବିକୃତ ରୂପାୟନ ଏହାର ଲକ୍ଷ୍ୟ । ଏଥିରେ କଳ୍ପନା ଗୌଣ, ରଞ୍ଜନ ନିଷେଧିତ, ବର୍ଣ୍ଣନା ବ୍ୟାପକ ଓ ପୁଙ୍ଖାନୁପୁଙ୍ଖ, ଗତି ବିଳମ୍ବିତ, ଦୃଶ୍ୟପଟ ବିସ୍ତାରିତ ପୁଣି ଗଭୀର ହୋଇଥାଏ । ବିଶ୍ୱସନୀୟତା ପାଇଁ ପ୍ରାମାଣିକତା ସଂଯୁକ୍ତ କରାଯାଏ ।

(୨) ଯେଉଁ ଗଳ୍ପର ଚରିତ୍ର ସୃଷ୍ଟି ଛଡ଼ା, ପ୍ରସଙ୍ଗ ରୁଚିବିରୋଧୀ, ସମସ୍ୟା ନୈତିକତା ସଂପୃକ୍ତ, ଘଟଣା ନୀତିଉଲ୍ଲଙ୍ଘନ (ଅସମର୍ଥୀତ ଯୌନାଚାର, ଧର୍ମ-ଈଶ୍ୱର ଅମାନ୍ୟ, ପବିତ୍ରପୀଠ ଅମର୍ଯ୍ୟାଦା) ଏବଂ ପରିଣତି ସମାଜଦୃଷ୍ଟି ପ୍ରତିକୂଳ ତାହା **ଅତିବାସ୍ତବବାଦୀ ଗଳ୍ପ** । ଅତିବାସ୍ତବବାଦୀ ଦର୍ଶନ ଅର୍ଥାତ ପ୍ରଚଳିତ ପରମ୍ପରା ପ୍ରତି ପ୍ରଚଣ୍ଡ ବିଦ୍ରୋହ ଯେଉଁ ଗଳ୍ପର ପୁଞ୍ଜି ତାହାକୁ ଅତିବାସ୍ତବବାଦୀ ଗଳ୍ପ କୁହାଯାଏ । ସବୁସତ୍ତ୍ୱେ ଏଥି ସହିତ ଆଧ୍ୟାତ୍ମ ଆସ୍ପୃହା ଯେମିତି ସ୍ୱାଗତ୍ୟ ସେମିତି ସ୍ୱପ୍ନ-ଅତିକଳ୍ପନା-ଅଶ୍ଳୀଳତା ଓ ସ୍ୱଚ୍ଛନ୍ଦଲିଖନ ନାମରେ ବିକୃତିର ପ୍ରକାଶ ଏଥିରେ ଅବାରିତ ।

(୩) ପ୍ରଗତିବାଦୀ ବା ସମାଜବାଦୀ ଗଳ୍ପର ପରିଚୟ ହେଉଛି ଏହାର ମୁଖ୍ୟପାତ୍ର ନିମ୍ନବର୍ଗର ଶୋଷିତ-ପ୍ରୋଲେତାରିଏତ; ପ୍ରତିପକ୍ଷ ହେଉଛି ଉଚ୍ଚବର୍ଗ ଶୋଷକ-ବୁର୍ଜୁୟା । ପ୍ରସଙ୍ଗ ହେଉଛି ସାମାଜିକ ଦୁରବସ୍ଥା, ଶୋଷଣ, ଦାରିଦ୍ର୍ୟଦୁର୍ବିପାକ, କଷଣ, ପୀଡ଼ା ଓ ବିଦ୍ରୋହ ମାନସିକତା । ପରିଣତି ବିଦ୍ରୋହ, ହତ୍ୟା, ଲୁଣ୍ଠନ ଓ ଅଧିକାର ସାବ୍ୟସ୍ତ । ସମାଜର ଅବସ୍ଥା ପରିବର୍ତ୍ତନ କରି ଏକ ସାମ୍ୟବାଦୀ ଶୋଷଣମୁକ୍ତ ସମାଜ ପ୍ରତିଷ୍ଠା ଏହାର ଉଦ୍ଦେଶ୍ୟ । ମାନବତାବାଦ ପ୍ରତି ଏହା ଅନୁକୂଳ ହେଲେ ହେଁ ବ୍ୟକ୍ତି ଅପେକ୍ଷା ସମୂହ, ପରିବାର ଅପେକ୍ଷା ସମାଜ ପ୍ରତି ଏହା ଅଧିକ ମାନ୍ୟତା ଓ ଅନୁରକ୍ତି ପ୍ରକାଶ କରେ ।

(୪) ଫ୍ରୟେଡ୍‌ବାଦୀ ଗଳ୍ପ ଫ୍ରୟେଡ୍ ପ୍ରବର୍ତ୍ତିତ ମନସ୍ତାତ୍ତ୍ୱିକ ତତ୍ତ୍ୱାଧାରିତ ଲକ୍ଷଣ ପ୍ରୟୋଗ କରାଯାଇଥିବା ଗଳ୍ପକୁ ବୁଝାଏ । ଯୌନାକାଂକ୍ଷା, ଯୌନପୀଡ଼ା, ଯୌନାବେଗ ଓ ଯୌନଯାତନାର ବିଭିନ୍ନ ରୂପ ଏଥିରେ ପ୍ରଦର୍ଶିତ ହେଉଥିବାରୁ ଏହାକୁ ସାଧାରଣତଃ ଯୌନଧର୍ମୀ ଗଳ୍ପ କୁହାଯାଏ । ମାତ୍ର ଫ୍ରୟେଡ୍‌ବାଦୀ ଗଳ୍ପମାତ୍ରକେ ଯୌନଧର୍ମୀ ଗଳ୍ପ ନୁହେଁ । ଏଥିରେ ସ୍ୱପ୍ନତତ୍ତ୍ୱ, ସୁଖତତ୍ତ୍ୱ, ବ୍ୟବହାର ତତ୍ତ୍ୱ, ଆତ୍ମରକ୍ଷା ତତ୍ତ୍ୱ, ନିବୃତ୍ତିତତ୍ତ୍ୱ, ଭୟତତ୍ତ୍ୱ ଇତ୍ୟାଦି ମାନସିକତା ସଂଯୁକ୍ତ ବହୁ ତତ୍ତ୍ୱ ଓ ଅବଧାରଣା ରୂପାୟିତ ହୋଇପାରେ । ବ୍ୟକ୍ତିର ଅସହାୟତା, ନିଃସଙ୍ଗତା, ଶୋକ ପ୍ରଭୃତି ମଧ୍ୟ ଏପ୍ରକାର ଗଳ୍ପରେ ପ୍ରଦର୍ଶିତ ହୁଏ । ଆବାଳବୃଦ୍ଧ ଏଥିରେ ଚରିତ୍ରଭାବେ ଅବତୀର୍ଣ୍ଣ ହୋଇପାରନ୍ତି ।

(୫) ଅସ୍ତିତ୍ୱବାଦୀ ଦର୍ଶନ ପିଣ୍ଡିତ ଗଳ୍ପକୁ ଅସ୍ତିତ୍ୱବାଦୀ ଗଳ୍ପ କୁହାଯାଏ । ଏଥିରେ ଚରିତ୍ରର ସମାଜଉଲ୍ଲଘିଂ ପ୍ରବୃତ୍ତି, ନୈତିକତାର ଅର୍ଗଳ ପ୍ରତି ଉପେକ୍ଷା ଏବଂ ଆତ୍ମପ୍ରତିଷ୍ଠାର ପ୍ରବଣତା ପ୍ରକଟିତ ହୁଏ । ମଣିଷକୁ ଧର୍ମ-ଦର୍ଶନ-ନ୍ୟାୟ-ନୀତି ଏପରିକି ରକ୍ତ ସମ୍ପର୍କ ଇତ୍ୟାଦି ପାରମ୍ପରିକ ଚେତନାଦ୍ୱାରା ଖଞ୍ଜ କରି ସମାଜଗୁଳାରେ ଚାଲିବାକୁ ବାଧ୍ୟ କରାଯାଉଥିବା ଏବଂ ମଣିଷର ସ୍ଥିତିଠାରୁ ଗୁଣସବୁକୁ ପ୍ରାଧାନ୍ୟ ଦିଆଯାଉଥିବା ସବୁ ପରିସ୍ଥିତିକୁ ଏପ୍ରକାର ଗଳ୍ପ ଚରିତ୍ର ବିରୋଧ କରେ । ଆତ୍ମ ଆବିଷ୍କାର, ଆତ୍ମ ଅନ୍ୱେଷା ଓ ଆତ୍ମ ପ୍ରତିଷ୍ଠାକୁ ମୁଖ୍ୟ କରି ମୃତ୍ୟୁ-ଧର୍ମ-ଈଶ୍ୱରଙ୍କୁ ଅଗ୍ରାହ୍ୟ କରି ପ୍ରତିକୂଳ ପରିସ୍ଥିତି ବିରୁଦ୍ଧରେ ଲଢ଼ି ଜୀବନର ଶୁଭ୍ର-ଶାଶ୍ୱତ ସ୍ୱରୂପ ପ୍ରତିଷ୍ଠା କରିବା ଏପ୍ରକାର ଗଳ୍ପର ଉଦ୍ଦେଶ୍ୟ ।

(୬) **ସ୍ୱଚ୍ଛନ୍ଦତାବାଦୀ ଗଳ୍ପ** ସ୍ୱଚ୍ଛନ୍ଦତାବାଦ ବା ପ୍ରକୃତିବାଦ ବା ନେଚୁରାଲିଜ୍‌ମ ଦ୍ୱାରା ପରିପୁଷ୍ଟ । ଏ ଧରଣର ଗଳ୍ପ ଶୈଳ୍ପିକ କାରସାଦିରେ ବକ୍ତବ୍ୟର ସ୍ୱାଚ୍ଛନ୍ଦ୍ୟକୁ ବ୍ୟାହତ କରୁଥିବା ସମସ୍ତ ଅପଚେଷ୍ଟା ବିରୁଦ୍ଧରେ ଏକ ପ୍ରତିବାଦ । ଚରିତ୍ରର କାର୍ଯ୍ୟକଳାପ, ଚିନ୍ତନ ଓ ଅନୁଭାବନାରେ ଯେଉଁ ପ୍ରସଙ୍ଗ ଯେମତି ରୂପରେ ଆସେ ତାହାକୁ ତଦନୁରୂପ ଅବିକୃତ ପ୍ରକାଶ କରିବା ଏ ପ୍ରକାର ଗଳ୍ପର ଧର୍ମ । ସତ୍ୟଶୀଳ ହେବା ଓ ବାସ୍ତବାନୁରକ୍ତ ରହିବାକୁ ଯାଇ ଏହି ଧରଣର ଗଳ୍ପ ସମାଜ ଓ ପ୍ରତିଷ୍ଠିତ ମୂଲ୍ୟବୋଧର ଉଲ୍ଲଘଂନ କରେ । ପୁଣି ଚରିତ୍ରର ଅନ୍ତର୍ମନର ମୁକ୍ତ ପ୍ରକାଶକ ହୋଇ ମଣିଷର ମନୋବୈଚିତ୍ର୍ୟ ସହ ପାଠକକୁ ପରିଚିତ କରାଏ ।

(୭) **ମାନବତାବାଦୀ ଗଳ୍ପ** ହେଉଛି ସେହି ଗଳ୍ପ ଯହିଁରେ ମାନବତା (ହ୍ୟୁମାନିଟି) ପ୍ରତି ଶ୍ରଦ୍ଧା ସମ୍ମାନ ପ୍ରକାଶ ପାଇବା ସହ ମାନବୀୟ ମୂଲ୍ୟବୋଧ ପ୍ରତିଷ୍ଠା ପାଇଥିବ ଏବଂ ମାନବ ସମ୍ବନ୍ଧୀ ଯେତେ ସୁଗୁଣ ସେଗୁଡ଼ିକୁ ପ୍ରୋତ୍ସାହିତ କରାଯାଇଥିବ । ଭାଗ୍ୟ, ଭବିତବ୍ୟ, ପ୍ରତିକୂଳ ପରିସ୍ଥିତି, ଧର୍ମ, ଈଶ୍ୱର, ନୀତି, ଦର୍ଶନ ଊର୍ଦ୍ଧ୍ୱରେ ମାନବଜୀବନର ମହତ୍ତ୍ୱ ପ୍ରତିଷ୍ଠା ହିଁ ହୋଇଥାଏ ଏ ଧରଣର ଗଳ୍ପର ଉଦ୍ଦେଶ୍ୟ । ମାନବର ଅନିଭୋଗ ପ୍ରତି ତୀବ୍ର ଦରଦ ଓ ଅକୁଣ୍ଠ ସମବେଦନା ପୁଣି ତହିଁରୁ ଉତ୍ତୀର୍ଣ୍ଣ ହେବାପାଇଁ ପର୍ଯ୍ୟାପ୍ତ ପ୍ରୋତ୍ସାହନରେ ମାନବତାବାଦୀ କ୍ଷୁଦ୍ରଗଳ୍ପ ହୁଏ ସମୃଦ୍ଧ । ସମାଜଭୂମିରେ ଏହି ଗଳ୍ପ ପ୍ରଗତିବାଦୀ, ମାନସିକ ଭୂମିରେ ଏହା ସ୍ୱଭାବବାଦୀ ଏବଂ ଗଭୀର ମନସ୍ତତ୍ତ୍ୱରେ ଏହା ଅସ୍ତିତ୍ୱବାଦୀ ଗଳ୍ପରୂପ ଘେନେ ।

(୮) **ସମାଜବାଦୀ ଗଳ୍ପ** ସମାଜ ସଂଲଗ୍ନ ବିଭିନ୍ନ ଚେତନାର ପ୍ରକାଶ ଘଟାଉଥିବା ଗଳ୍ପକୁ କୁହାଯାଏ । ଏଥିରେ ସମାଜର ବିଭିନ୍ନ ଦିଗ ଯଥା- ସାଂସ୍କୃତିକ, ରାଜନୀତିକ, ଧାର୍ମିକ, ଆଚାରଗତ, ଆନୁଷ୍ଠାନିକ, ଲୌକିକ, ଆର୍ଥିକ ରୂପ ଏବଂ ପାରମ୍ପରିକ ତଥା ଆଧୁନିକ ସମାଜସମସ୍ୟା ସର୍ବୋପରି ସମାଜ

ପରିପ୍ରେକ୍ଷୀରେ ବ୍ୟକ୍ତିଠାରେ ସୃଷ୍ଟ ପ୍ରତିକ୍ରିୟାର ପ୍ରକାଶ ଘଟିଥାଏ । ସାମାଜିକ ଗଳ୍ପ ସମାଜଚିତ୍ର ହୋଇଥାଏ; ସମାଜବାଦୀ ଗଳ୍ପ ସମାଜ ଅଧ୍ୟୟନ ଓ ଚିତ୍ରଣର ପ୍ରକାଶ ହୋଇଥାଏ । ସମାଜବାଦୀ ଗଳ୍ପକୁ ସମାଜନିଷ୍ଠ ଗଳ୍ପ କୁହାଯାଇପାରେ ।

(୯) ପ୍ରତିକବାଦୀ ଗଳ୍ପ ସେହି ପ୍ରକାର ଗଳ୍ପ ଯହିଁରେ ପ୍ରତ୍ୟକ୍ଷ ବର୍ଣ୍ଣନ ସ୍ଥାନରେ ପ୍ରତିକ ବ୍ୟବହାର କରାଯାଇଥାଏ । ଏଥିରେ ଚରିତ୍ର, ଘଟଣା, ସମୟ ମଧ୍ୟରୁ କୌଣସି ଗୋଟିଏ କିମ୍ୱା ଏକାଧିକ କ୍ଷେତ୍ରରେ ପ୍ରତିକ ପ୍ରଯୁକ୍ତ ହୋଇପାରେ । ପ୍ରତିକବାଦୀ ଗଳ୍ପ ପ୍ରାୟତଃ ଆଙ୍ଗିକଗତ ହୋଇଥାଏ । ଏହାର ଅଭିପ୍ରାୟ ପ୍ରତିକ ଦ୍ୱାରା କ୍ଲୃପ୍ତ ଥାଏ । ପ୍ରତିକର ଉଦ୍‌ଘାଟନରେ ଗଳ୍ପ ଅଭିପ୍ରାୟ ସ୍ପଷ୍ଟ ହୁଏ ।

(୧୦) ରୋମାଣ୍ଟିକ ଗଳ୍ପ ବା ସ୍ୱୈରବାଦୀ ଗଳ୍ପ କହିଲେ ସେହିପ୍ରକାର ଗଳ୍ପକୁ ବୁଝାଏ ଯହିଁରେ ଆବେଗ ପ୍ରାଧାନ୍ୟ ଲଭିଥାଏ । ଏହି ଆବେଗରେ ବ୍ୟକ୍ତିର ପ୍ରଣୟାନୁରାଗ, ସୌନ୍ଦର୍ଯ୍ୟାନୁରାଗ ଓ କଳ୍ପନା ତଥା ସ୍ୱପ୍ନ ପରାୟଣତା ପ୍ରତି ଅନୁରକ୍ତି ଠାରୁ ଆରମ୍ଭ କରି ଦେଶପ୍ରେମ, ଜାତିପ୍ରୀତି, ଶୌର୍ଯ୍ୟପ୍ରକାଶ, ଯୁଦ୍ଧ ଅଭିଯାନ, ଅତୀତ ଅନୁରକ୍ତି, ସମାଜ ସଂସ୍କାର ପର୍ଯ୍ୟନ୍ତ ସମସ୍ତ ହୃଦୟଗତ ପ୍ରବଣତା ଅନ୍ତର୍ଗତ । ସେ ଦୃଷ୍ଟିରୁ ସମସ୍ତ ଗଳ୍ପ ରୋମାଣ୍ଟିକ ବା ସ୍ୱୈରବାଦ ଅନ୍ତର୍ବର୍ତ୍ତୀ । ମାତ୍ର ପ୍ରଣୟପ୍ରଧାନ ଗଳ୍ପକୁ ସ୍ୱୈରବାଦୀ ଗଳ୍ପ ଭାବରେ ପ୍ରାୟତଃ ଗ୍ରହଣ କରାଯାଏ ।

(୧୧) ଚିରାୟତବାଦୀ ବା କ୍ଲାସିକ୍ ଗଳ୍ପ ଆଧୁନିକ କାଳରେ ସୃଷ୍ଟି ହେବା ସମ୍ଭବ ନୁହେଁ କାରଣ କ୍ଲାସିକ୍ ପ୍ରାଚୀନତା, ଅତୀତ ଏବଂ ଉତ୍କର୍ଷ ସହିତ ସଂପୃକ୍ତ । ଯାହା ପୂର୍ବେ ରଚିତ ହୋଇ ତତ୍କାଳିକତାରୁ ଉତ୍ତୀର୍ଣ୍ଣ ହୋଇ ଆପଣା ଉତ୍କର୍ଷ ଯୋଗୁଁ ଚିରକାଳର ଧ୍ୟେୟ ବା ଆଦର୍ଶ ହୋଇପାରିଛି ଓ ଏକ କାଳୋତ୍ତୀର୍ଣ୍ଣ ମୂଲ୍ୟବୋଧର ପ୍ରତିକ ହୋଇପାରିଛି ତାହା ହିଁ 'ଚିରାୟତ' । ଏଣୁ କ୍ଷୁଦ୍ରଗଳ୍ପରେ ମୂଲ୍ୟବୋଧ ପ୍ରତି ସମ୍ଭ୍ରମ-ଅନୁରକ୍ତି, ମହନୀୟ ଆଦର୍ଶ ପ୍ରତି ଉନ୍ମୁଖତା, ତ୍ୟାଗ-କ୍ଷମା-ଶୌର୍ଯ୍ୟ-ଔଦାର୍ଯ୍ୟ ଆଦି ଗୁଣର ପ୍ରତିଷ୍ଠା ପ୍ରକାଶ ପାଇଥିଲେ ତାହାକୁ ଚିରାୟତବାଦୀ ଗଳ୍ପ କୁହାଯାଇଥାଏ । ଆଦର୍ଶବାଦୀ ଗଳ୍ପ ଏହାର ଲଘୁରୂପ ।

## (ଗ) ଆବେଦନ ଦୃଷ୍ଟିରୁ :

ଆବେଦନ ଦୃଷ୍ଟିରୁ କ୍ଷୁଦ୍ରଗଳ୍ପ ୧୧ ପ୍ରକାର ହୋଇପାରେ ।

(୧) ହାସ୍ୟାବେଦନ (୨) କାରୁଣ୍ୟାବେଦନ (୩) ଭୟାବେଦନ (୪) ବୀଭତ୍ସାବେଦନ (୫) ବ୍ୟଙ୍ଗାବେଦନ (୬) ପ୍ରେମାବେଦନ (୭) ଶୃଙ୍ଗାରାବେଦନ (୮) ଯୌନାବେଦନ (୯) ବିରହାବେଦନ (୧୦) ମିଳନାବେଦନ ଓ (୧୧) ଉଭଟଆବେଦନ ବିଶିଷ୍ଟ ଗଳ୍ପ ।

(୧) ଯେଉଁ ଗଳ୍ପରେ ହାସ୍ୟରସ ଅବତାରଣା ପାଇଁ ସଚେତନ ଉଦ୍ୟମ କରାଯାଇଥାଏ ଏବଂ ତାହା କରିବାପାଇଁ ଚରିତ୍ରର ବିକୃତି, ଭାଷାର ବିକୃତି, ପ୍ରସଙ୍ଗର ଅଯୌକ୍ତିକତା ଇତ୍ୟାଦିର ସାହାଯ୍ୟ ନିଆଯାଇଥାଏ ଓ ପରିଣତିରେ ଏକ ପରିଶୀଳିତ ପ୍ରଶାନ୍ତି ଉପଲବ୍ଧ ହୁଏ ତାହାକୁ ହାସ୍ୟାବେଦନମୂଳକ ଗଳ୍ପ ବା ହାସ୍ୟରସାତ୍ମକ ଗଳ୍ପ କୁହାଯାଏ । କାହାକୁ ଆକ୍ଷେପ ବା ଆଘାତ କରିବା କିମ୍ବା କାହାରି ପ୍ରତି ବିଦ୍ରୂପ ଓ ପରିହାସ କରୁଥିବା ଉଦ୍ଦେଶ୍ୟ ନଥିବା ଏପ୍ରକାର ଗଳ୍ପପାଇଁ ଜରୁରୀ ।

(୨) ଯେଉଁ ଗଳ୍ପରେ କରୁଣରସ ନିଷ୍ପତ୍ତି ଘଟିଥାଏ ଅର୍ଥାତ୍ ଶୋକ, ସନ୍ତାପ, ଦୁଃଖ, ଦୈନ୍ୟ, ପ୍ରାକୃତିକ ବିପତ୍ତି, ରାଜଦଣ୍ଡ, ଦୈବୀଦଣ୍ଡ, ଆତ୍ମକୃତ ତ୍ରୁଟିର ପରିଣତି ସ୍ୱରୂପ କାୟିକ, ମାନସିକ, ଆର୍ଥୀକ ଅନିଭୋଗ ଯୋଗୁଁ ଚରିତ୍ର ହନ୍ତସନ୍ତ ହେଉଥିବା ଦର୍ଶାଯାଇଥାଏ ତାହା କାରୁଣ୍ୟାବେଦନ ବିଶିଷ୍ଟ ଗଳ୍ପ । ଏପ୍ରକାର ଗଳ୍ପରେ ଚରିତ୍ରର ଅନୁତାପ-ପଶ୍ଚାତାପ ଥିଲେ ଚରିତ୍ର ପ୍ରତି ପାଠକୀୟ ସମବେଦନା ଅଧିକ ନମିତ ହୁଏ; ଅନ୍ୟଥା ଚରିତ୍ର ସ୍ଥିତିବାଦୀ ଚରିତ୍ରଭାବେ ନିନ୍ଦିତ ହୁଏ ।

(୩) ଯେଉଁ ଗଳ୍ପରୁ ଭୟ-ତ୍ରାସ-ଶଙ୍କା-ଉଦ୍‌ବେଗ ଉପଲଭ୍ୟ ହୁଏ ତାହାକୁ ଭୟାବେଦନଯୁକ୍ତ ଗଳ୍ପ କୁହାଯାଏ । ଭୂତ-ପ୍ରେତ, ତନ୍ତ୍ର ସାଧକ, ଅଜ୍ଞାତ ଯାତ୍ରା, ଦୁସ୍ତର ଅଭିଯାନ, ରହସ୍ୟ ସନ୍ଧାନ ଏବଂ ଶିକାର ସମ୍ପର୍କୀୟ ଗଳ୍ପରେ ଏହି ରସ ନିଷ୍ପନ୍ନ ହେବାର ସୁଯୋଗ ପ୍ରଶସ୍ତ । ଏପ୍ରକାର ଗଳ୍ପର ଚରିତ୍ରର ସାହସ, ଧୈର୍ଯ୍ୟ, ଶକ୍ତି ଓ ମନୋବଳର ଯଥେଷ୍ଟ ପ୍ରକାଶ ଘଟିଥାଏ ।

(୪) ବନ୍ୟା, ବାତ୍ୟା, ମରୁଡ଼ି, ଦୁର୍ଘଟଣା, ଦଙ୍ଗା ଆଦି ଫଳରେ ଘଟିଥିବା ମୃତ୍ୟୁର ତାଣ୍ଡବ ଓ କରାଳ ଦୃଶ୍ୟପଟ ଏବଂ ପଚମାନ ଗଳିତ ଶବ ନିସୃତ ଦୁର୍ଗନ୍ଧ; ଶବଭୋଜି ଶକୁନ, ଶୃଗାଳ, ସାରମେୟ, ବାୟସଙ୍କ ଉଲ୍ଲାସ ଓ ଖଣ୍ଡଯୁଦ୍ଧଜନିତ ପରିସ୍ଥିତିରୁ ଉଦ୍ଭୁତ ହେଉଥିବା ଘୃଣାଉତ୍ପାଦକ ଗଳ୍ପକୁ ବୀଭତ୍ସାବେଦନ ଗଳ୍ପ କୁହାଯାଏ । ଏଥିରେ ଭୟ ଓ ଘୃଣା ମିଶ୍ରିତଭାବେ ଥାଏ ।

(୫) ଉପହସିତ ଓ ଲଜ୍ଜାକର ପରିସ୍ଥିତିରେ ପଡ଼ି ଚରିତ୍ର ଭୋଗୁଥିବା ପୀଡ଼ା ଓ ତାପ ଯୋଗୁଁ ପାଠକକୁ ଯେଉଁ ହାସ୍ୟକର ଉପାଦାନ ସୁଲଭ ହୁଏ ତାହା ବ୍ୟଙ୍ଗ୍ୟ ଆବେଦନ ସୃଷ୍ଟିକରେ । ବ୍ୟଙ୍ଗ୍ୟପାତ୍ରଟି ସ୍ୱାର୍ଥପର, ହୀନ, ନୀଚ, ଅଧମ, ଚୋର, ଲମ୍ପଟ, ଧୂର୍ତ୍ତ, କିମ୍ବା ସମାଜତତ୍ତ୍ୱବିରୋଧୀ ସତ୍ତାଟିଏ ହୋଇଥାଏ । ସେ ପ୍ରଥମରୁ ଉତ୍ତମ ବ୍ୟକ୍ତି ଭାବରେ ନିଜକୁ ଜାହିର କରି ପରେ ଅଧମ ପ୍ରମାଣିତ ହେବା ପରିପ୍ରେକ୍ଷୀରେ ବ୍ୟଙ୍ଗର ଚଟୁଳତା ବୃଦ୍ଧିପାଏ । ଯେଉଁ ଗଳ୍ପ ଏଭଳି

ଚରିତ୍ର କିମ୍ବା ପ୍ରସଙ୍ଗ ଅଙ୍ଗୀଭୂତ କରିଥାଏ ତାହା **ବ୍ୟଙ୍ଗ୍ୟାବେଦନମୂଳକ ଗଳ୍ପ** । ଏଥିରେ କ୍ଷମତାଧିକାରୀ, ପଦାଧିକାରୀ ଓ ପ୍ରତିଷ୍ଠାପନ୍ନ ବ୍ୟକ୍ତି ଏବଂ ଆଟୋପ ସର୍ବସ୍ୱ ଅନୁଷ୍ଠାନ ଆକ୍ଷିପ୍ତ ହୋଇଥାଏ ।

(୬) ଯେଉଁ ଗଳ୍ପରେ ପ୍ରେମ-ସ୍ନେହ-ସଦ୍ଭାବ-ବନ୍ଧୁତା ପାଇଁ ସ୍ୱାର୍ଥତ୍ୟାଗ, କ୍ଷମା, ଆତ୍ମବଳୀଦାନ ଇତ୍ୟାଦି କରାଯାଇଥାଏ ଓ ତଦ୍ୱାରା ଉପକୃତ ପାତ୍ରଠାରେ କୃତଜ୍ଞତା-ଆହ୍ଲାଦ-ସ୍ମୃତିମନ୍ଥନ-ପ୍ରଶଂସା ଓ ପୂଜା ମନୋଭାବ ପ୍ରକଟିତ ହୋଇଥାଏ ତାହାକୁ **ପ୍ରେମାବେଦନମୂଳକ ଗଳ୍ପ** କୁହାଯାଏ । ସଙ୍କୁଚିତ ଅର୍ଥରେ ନାୟକ-ନାୟିକାଙ୍କ ପାରସ୍ପରିକ ଅନୁରାଗ ସୃଷ୍ଟି ଓ ମିଳନରେ ପର୍ଯ୍ୟବସିତ ଗଳ୍ପକୁ ମଧ୍ୟ ପ୍ରେମାବେଦନମୂଳକ ଗଳ୍ପ କୁହାଯାଏ । ପରିବ୍ୟାପ୍ତ ଅର୍ଥରେ ଏହା ମାନବେତର ପ୍ରାଣୀ ସହ ମଣିଷର ସଖ୍ୟ ବିଶିଷ୍ଟ ଗଳ୍ପକୁ ମଧ୍ୟ ବୁଝାଏ । ଈଶ୍ୱରଙ୍କ ପ୍ରତି ଚରିତ୍ରର ଗଦ୍‌ଗଦ ଭକ୍ତି ଓ ସର୍ବତୋସମର୍ପଣର ଗଳ୍ପକୁ ସୁଦ୍ଧା ଏହି ପର୍ଯ୍ୟାୟରେ ନିଆଯାଇପାରେ ।

(୭) **ଶୃଙ୍ଗାରାବେଦନମୂଳକ ଗଳ୍ପ** ହେଉଛି ସେହି ଗଳ୍ପ ଯହିଁରେ ଚରିତ୍ରର ରାଗାତ୍ମକ ବୃତ୍ତିର ଉଦ୍‌ବୋଧନରେ ପ୍ରେମ-ପ୍ରଣୟ ହେତୁକ ଉତ୍କଣ୍ଠା-ସ୍ୱେଦ-ଅଶ୍ରୁ-କମ୍ପ ଆଦି ବିରହ ଲକ୍ଷଣ ପ୍ରକଟିତ ହୋଇଥାଏ ଓ ତାହା ପ୍ରାଧାନ୍ୟ ପାଇଥାଏ । ଏଥିରୁ ମିଳନସ୍ୱାଦ ଅଥବା ବିରହସ୍ୱାଦ ଉପଲଭ୍ୟ ହୋଇପାରେ ଅର୍ଥାତ୍ ଏହା ସୁଖାନ୍ତ କିମ୍ବା ଦୁଃଖାନ୍ତ ହୋଇପାରେ । ଉଭୟ ପରିସ୍ଥିତିରେ ଏହା ଶୃଙ୍ଗାରଧର୍ମୀ ବା ଶୃଙ୍ଗାର ଆବେଦନମୂଳକ ବୋଲାଏ ।

(୮) **ଯୌନାବେଦନମୂଳକ ଗଳ୍ପ** ଶୃଙ୍ଗାର ଗଳ୍ପ ଶ୍ରେଣୀୟ ନୁହେଁ । ଶୃଙ୍ଗାରୀଗଳ୍ପରେ ହୁଏତ ଯୌନତା ରହିପାରେ ମାତ୍ର ଯୌନାବେଦନମୂଳକ ଗଳ୍ପ ମୁଖ୍ୟତଃ ଦୈହିକ ସମ୍ଭୋଗ, ପ୍ରବଳ କାମେଚ୍ଛା, ଉତ୍କଟ କାମପୀଡ଼ା, ଅପ୍ରାକୃତିକ ରତିବିଳାସ, କୃତ୍ରିମ ଓ ଅପସଙ୍ଗମ ଇତ୍ୟାଦି ବିଷୟ କେନ୍ଦ୍ରିତ । ଲାମ୍ପଟ୍ୟ, କାମାର୍ତ୍ତତା ଓ ପାଶବତା ଏହାର ଆଶ୍ରୟ । ଦେହଭୋଗ, ଧର୍ଷଣ, ରିରଂସା ଏହାର କ୍ଷେତ୍ର । ପୈଶାଚିକ ଉଲ୍ଲାସ, ଘୋର ବିଷାଦ ଏବଂ ପ୍ରବଳ ଘୃଣା ଇତ୍ୟାଦି ଭାବ ଏହାର ପରିଣତି । ଇନ୍ଦ୍ରିୟଗତ ଉତ୍ତେଜନା ପ୍ରେରିତ କରାଉଥିବା ସବୁଗଳ୍ପ ଏହି ପର୍ଯ୍ୟାୟଭୁକ୍ତ ।

(୯) ଯେଉଁ ଗଳ୍ପରୁ ପରିଣତିରେ ବିୟୋଗ, ଦୂରଯାତ୍ରା, ପ୍ରବାସ ରହଣୀ, ସମ୍ପର୍କଚ୍ଛିନ୍ନତା, ସମ୍ପର୍କ ଅସ୍ୱୀକାର ଓ ବିଚ୍ଛେଦ ଇତ୍ୟାଦି କାରଣରୁ ଚରିତ୍ରଠାରେ ବିରହଭାବ ସଞ୍ଜାତ ଶୋକ, କାରୁଣ୍ୟ, ସ୍ମୃତିଚାରଣ ଏବଂ ସ୍ମୃତିତଲ୍ଲୀନତା ହେତୁ ଅଶ୍ରୁ, ଦୀର୍ଘଶ୍ୱାସ ପାତ ହୁଏ ତାହାକୁ **ବିରହାବେଦନମୂଳକ ଗଳ୍ପ** କୁହାଯାଏ ।

ସ୍ଥୂଳତଃ ନାୟକନାୟିକାର ବିଚ୍ଛେଦକୁ ବୁଝାଉଥିଲେ ହେଁ ଏହା ମାତା-ପୁତ୍ର, ପିତା-ପୁତ୍ର ଓ କନ୍ୟା, ଆତ୍ମୀୟସ୍ୱଜନ, ବନ୍ଧୁ-ପ୍ରତିବେଶୀଙ୍କ ମଧ୍ୟରେ ଘଟୁଥିବା ବିଚ୍ଛେଦ ଭିତ୍ତିରେ ମଧ୍ୟ ରଚିତ ହୋଇପାରେ ।

(୧୦) **ମିଳନାବେଦନମୂଳକ ଗଳ୍ପରେ** ପରିଣତିଟି ମିଳନ ପ୍ରସଙ୍ଗ ଆଧାର କରିଥାଏ । ଦୀର୍ଘ ପ୍ରଚେଷ୍ଟା ଉତ୍ତାରୁ ଦୁଇ ପରସ୍ପର ଆକାଙ୍‌କ୍ଷ୍ୟ ହୃଦୟର ମିଳନ ହେଉ କିମ୍ବା ଦୀର୍ଘପ୍ରବାସ, ଯୁଦ୍ଧଭୂମି, ଦୀର୍ଘ ମନୋମାଳିନ୍ୟ, ପ୍ରାକୃତିକ ବିପ୍ଲବ, ଦୁଃସାହସିକ ଅଭିଯାନ, ଆକସ୍ମିକ ବିଚ୍ଛେଦଜନିତ ଦୂରାବସ୍ଥାନରୁ ପ୍ରତ୍ୟାବର୍ତ୍ତନ ଫଳତଃ ମିଳନ ହେଉ ସବୁକ୍ଷେତ୍ରରେ ଗଳ୍ପଟି ଏହି ପ୍ରକାର ଗଳ୍ପ ମାନ୍ୟତା ପାଏ । ଏପ୍ରକାର ଗଳ୍ପରେ ଆନନ୍ଦାଶ୍ରୁ, ଅଭିମାନସିକ୍ତ ସଂଳାପ, ଈଶ୍ୱରଙ୍କ ପ୍ରତି କୃତଜ୍ଞତା ଏବଂ ଉତ୍‌ଫୁଲ୍ଲତା ପ୍ରକଟିତ ହୁଏ ।

ଏପ୍ରକାର ଗଳ୍ପର ଅଧିକଭାଗ ବିରହାନୁଭବ ଭିତ୍ତିକ ହୋଇଥାଏ ଏବଂ ବିରହର ତୀବ୍ରତା ଉପରେ ମିଳନାନୁଭବର ପ୍ରଗାଢ଼ତା ନିର୍ଭରକରେ ।

(୧୧) ଯେଉଁ ଗଳ୍ପର ଆବେଦନ ଉଦ୍ଭଟ ଅର୍ଥାତ୍ ଏକ ନିର୍ଦ୍ଦିଷ୍ଟ ରସ ବା ଦର୍ଶନ ବା ଉପଲବ୍ଧି ବା ଅନୁଭୂତି ସଂପ୍ରେରିତ କରିନପାରି ପାଠକକୁ ଏକ ବିଚିତ୍ର ମନଃସ୍ଥିତିରେ ପହଞ୍ଚାଏ ତାହାକୁ **ଉଦ୍ଭଟଆବେଦନ ଧର୍ମୀ ଗଳ୍ପ** କୁହାଯାଏ । ସ୍ଥିତିବାଦୀ ଓ ଅତିବାସ୍ତବବାଦୀ ଗଳ୍ପ ପରିଣତିରେ ଉଦ୍ଭଟତା ଉତ୍ପନ୍ନ ହୋଇପାରେ । ସ୍ୱପ୍ନ, ଅତିକଳ୍ପନା ଆଶ୍ରିତ ରୋମାଣ୍ଟିକ ଗଳ୍ପ ଉଦ୍ଭଟ ଆବେଦନ ବିଶିଷ୍ଟ ହୋଇପାରେ । ଏପ୍ରକାର ଗଳ୍ପ ନିଶ୍ଚିତ କଥାବସ୍ତୁ କିମ୍ବା ନିର୍ଦ୍ଦିଷ୍ଟ କଥାପରିଣତି ବିଶିଷ୍ଟ ହୁଏ ନାହିଁ ।

## (ଘ) ଉପାଦାନ ଦୃଷ୍ଟିରୁ :

ଉପାଦାନ ଦୃଷ୍ଟିରୁ କ୍ଷୁଦ୍ରଗଳ୍ପ ୪ ପ୍ରକାର ହୋଇପାରେ ଯଥା -

(୧) କଥାଭାଗ ପ୍ରଧାନ (୨) ଚରିତ୍ରପ୍ରଧାନ (୩) ବାତାବରଣ ପ୍ରଧାନ (୪) ଭାବପ୍ରଧାନ ।

(୧) ଯେଉଁ ଗଳ୍ପରେ କଥାଭାଗର ଗୁରୁତ୍ୱ ଅନ୍ୟାନ୍ୟ ଉପାଦାନ ଠାରୁ ଅଧିକ ହୋଇଥାଏ ଏବଂ ସମଗ୍ର ଗଳ୍ପ ତଦ୍ୱାରା ନିୟନ୍ତ୍ରିତ ହେଉଥାଏ ତାହାକୁ **କଥାଭାଗ ପ୍ରଧାନ ଗଳ୍ପ** କୁହାଯାଏ । ଏଥିରେ କଥାଭାଗର ବଳିଷ୍ଠତା ନିକଟରେ ଚରିତ୍ର ଅବନମିତ ହୁଏ ଓ ନିଜ ଚାରିତ୍ରିକତା ତାହାପ୍ରତି ସମର୍ପିତ କରେ । ଅନ୍ୟକଥାରେ ଏପ୍ରକାର ଗଳ୍ପର କଥାଭାଗକୁ ପ୍ରତିଷ୍ଠାଦେବାପାଇଁ ଅନୁକୂଳ ଚରିତ୍ର ସମାବେଶ କରାଯାଏ । ଐତିହାସିକ ଗଳ୍ପରେ କେତେକ କ୍ଷେତ୍ରରେ କଥାଭାଗ ପ୍ରାଧାନ୍ୟ ପାଇଥାଏ ।

(୨) ଚରିତ୍ରପ୍ରଧାନ ଗଳ୍ପରେ ଚରିତ୍ର ହିଁ ପ୍ରାଧାନ୍ୟ ପାଇଥାଏ । ଏପ୍ରକାର ଗଳ୍ପରେ ଚରିତ୍ର ମୁଖ୍ୟ; ଘଟଣା-ପରିବେଶ ଗୌଣ । ଚରିତ୍ରର ଆଭିମୁଖ୍ୟ କଥାଭାଗ, ଘଟଣା ଓ ପରିବେଶକୁ ନିୟନ୍ତ୍ରିତ କରି ସ୍ୱାତନ୍ତ୍ର୍ୟ ଓ ସ୍ୱକୀୟତା ପ୍ରକଟ କରିପାରିଲେ ଗଳ୍ପ ଚରିତ୍ରପ୍ରଧାନ ହୁଏ । ଏଭଳି ଗଳ୍ପରେ ପ୍ରଥମେ ଚରିତ୍ରଚେତନା ସ୍ଥିରୀକୃତ ହୋଇ ପରେ ଉପଯୁକ୍ତ କଥାଭାଗ ଉପରେ ନ୍ୟସ୍ତ ହୁଏ ।

(୩) କେତେକଗଳ୍ପରେ ଘଟଣା ଓ ଚରିତ୍ରର୍ ଆଭିମୁଖ୍ୟକୁ ଗୌଣକରି ପରିବେଶ ଓ ବାତାବରଣୀୟ ପ୍ରଭାବ ଗଳ୍ପପରିଣତିକୁ ନିୟନ୍ତ୍ରିତ କରିବସେ ଓ ପାଠକର ପୂର୍ବାନୁମାନକୁ ସମ୍ପୂର୍ଣ୍ଣ ବିତ୍ରସ୍ତ କରି ଏକ ଅକଳ୍ପିତ ପରିସ୍ଥିତିରେ ପହଞ୍ଚାଏ । ଏପ୍ରକାର ଗଳ୍ପକୁ **ବାତାବରଣପ୍ରଧାନ ଗଳ୍ପ** କୁହାଯାଏ । ଏଥିରେ ପରିବେଶ ଚିତ୍ରର ପୁଙ୍ଖାନୁପୁଙ୍ଖତା ଏବଂ ଚରିତ୍ରର ମନସ୍ତାତ୍ତ୍ୱିକ ପ୍ରବଣତା ସୁସମଞ୍ଜସ ଭାବେ ବିନ୍ୟସ୍ତ ହୋଇଥାଏ ।

(୪) **ଭାବପ୍ରଧାନ ଗଳ୍ପ** ରେ ଗଳ୍ପ ଗୃହୀତ 'ଭାବ' ବା ଆଇଡ଼ିଆ ହିଁ ମୁଖ୍ୟ ହୋଇଥାଏ । କଥାକାରର ମନୋରାଜ୍ୟରେ ଉଦିତ କୌଣସି ନୂତନ ଆଇଡ଼ିଆ ପ୍ରମୂର୍ତ୍ତନ ପାଇଁ ସ୍ୱତନ୍ତ୍ର ଚରିତ୍ର, ଅଭିନବ କଥାବସ୍ତୁ ଏବଂ ସୁଯୋଜିତ ପରିବେଶ ଏପ୍ରକାର ଗଳ୍ପରେ ଗୃହୀତ ହୋଇଥାଏ । ଏ ପ୍ରକାର ଗଳ୍ପର ଭାଷା, ସଂଳାପ, ଉତ୍କଣ୍ଠା, ଦ୍ୱନ୍ଦ୍ୱ ଇତ୍ୟାଦି ଉପାଦାନ 'ଭାବ'ର ବଳିଷ୍ଠତା ନିକଟରେ ନିଷ୍ପ୍ରଭ ହୋଇଥାଏ ।

## (ଙ) କଥାଭାଗ ଦୃଷ୍ଟିରୁ :

କଥାଭାଗ ଦୃଷ୍ଟିରୁ କ୍ଷୁଦ୍ରଗଳ୍ପ ୬ ପ୍ରକାର ହୋଇପାରେ ।

(୧) କାହାଣୀଧର୍ମୀ (୨) ଅକାହାଣୀ ଧର୍ମୀ (୩) ବର୍ଣ୍ଣନାଧର୍ମୀ (୪) ବ୍ୟଞ୍ଜନାଧର୍ମୀ (୫) ରୂପକଧର୍ମୀ (୬) ସଙ୍କେତଧର୍ମୀ ।

(୧) ଯେଉଁ ଗଳ୍ପରେ ଏକ ସୁଗଠିତ କାହାଣୀ ଥାଏ ଅର୍ଥାତ୍ ଆଦ୍ୟ-ମଧ୍ୟ-ଅନ୍ତଃ ସମନ୍ୱିତ କଥାବୃତ୍ତ ଥାଏ ତାହା **କାହାଣୀଧର୍ମୀ ଗଳ୍ପ** । ଏଥିରେ କାହାଣୀଟି ମୁଖ୍ୟ; ଚରିତ୍ର ଓ ପରିବେଶ ଗୌଣ । ପାରମ୍ପରିକ କଥାବିଧାନର ଏହା ସାଧାରଣ ଲକ୍ଷଣ । ଏପ୍ରକାର ଗଳ୍ପ ଅନ୍ୟଜଣେ ଶ୍ରୋତାକୁ ଅବିକଳ ଶୁଣାଇ ଦିଆଯାଇପାରେ । ବିରହ-ମିଳନ ଉଭୟ ଆବେଦନ ଏ ଧାରାରେ ସୁଲଭ । ବର୍ଣ୍ଣନାର ଭୂମିକା ମୁଖ୍ୟ; ଚରିତ୍ର ଗୌଣ ।

(୨) ଯେଉଁ ଗଳ୍ପରେ ନିର୍ଦ୍ଦିଷ୍ଟ କାହାଣୀ ନଥାଏ କି ସୁଗଠିତ କଥାବସ୍ତୁ ମଧ୍ୟ ନଥାଏ ବରଂ ଚରିତ୍ରର ଚିନ୍ତନ କି ଲେଖକର ବର୍ଣ୍ଣନ କେବଳ ପ୍ରଯୁକ୍ତ ହୋଇଥାଏ ତାହାକୁ

**ଅକାହାଣୀଧର୍ମୀ ଗଳ୍ପ** କୁହାଯାଏ । ମନସ୍ତାତ୍ତ୍ୱିକ ଗଳ୍ପ, ବାସ୍ତବବାଦୀ ଗଳ୍ପ ଏବଂ ସ୍ଥିତିବାଦୀ ଗଳ୍ପ କ୍ଷେତ୍ରରେ ଏବଂ ମିନିଗଳ୍ପ-ଆଭାସଗଳ୍ପଗୁଡ଼ିକରେ ଏହି ଧର୍ମ ଅନୁସୃତ ହୋଇଥାଏ ।

(୩) ଯେଉଁ ଗଳ୍ପର କଥାଭାଗ ବର୍ଣ୍ଣନାଧର୍ମୀ ଅର୍ଥାତ୍ ଲେଖକ ସଂଳାପ, ସ୍ୱଗତ କଥନ ମାନସିକ ଚିନ୍ତନ, ପ୍ରତୀକ-ସଙ୍କେତ ଇତ୍ୟାଦି ପ୍ରୟୋଗ ନକରି ସମଗ୍ର ଗଳ୍ପ ସ୍ୱୟଂ ସର୍ବଦ୍ରଷ୍ଟାଭାବେ ବର୍ଣ୍ଣନା କରିଥାନ୍ତି; ତାହା **ବର୍ଣ୍ଣନାଧର୍ମୀ ଗଳ୍ପ** । ଅଭିଯାନ, ଶିକାର, ଭ୍ରମଣ ପ୍ରସଙ୍ଗରେ; ବାସ୍ତବବାଦୀ ଚେତନା ଭିତ୍ତିରେ ଓ ଦୀର୍ଘବିଳସିତ କଥା କ୍ଷେତ୍ରରେ ଏହି ରୀତି ପ୍ରଯୁକ୍ତ ହୋଇଥାଏ । ଏଥିରେ ଚରିତ୍ରର ପ୍ରକାଶ ଅନୁଜ୍ଜ୍ୱଳ ମାତ୍ର ଘଟଣାର ଗୁରୁତ୍ୱ ସବଳ । 'ମୁଁ' ବା ଆତ୍ମକଥନ ରୀତି ଏହାର ପ୍ରଥମ ପସନ୍ଦ ପ୍ରକାଶରୀତି ।

(୪) ଯେଉଁ ଗଳ୍ପ କୌଣସି ନିର୍ଦ୍ଦିଷ୍ଟ ବ୍ୟଞ୍ଜନା ଦେବାପାଇଁ ଅଭିପ୍ରେତ ହୋଇ ରଚିତ ହୋଇଥାଏ ତାହା ସମେତ କଥାପରିଣତିରେ କୌଣସି ଗଳ୍ପ ପ୍ରସଙ୍ଗ ଅତିରିକ୍ତ କୌଣସି ଗୂଢ଼ ବ୍ୟଞ୍ଜନା ପ୍ରଦାନ କରୁଥିଲେ **ବ୍ୟଞ୍ଜନାଧର୍ମୀ ଗଳ୍ପ** ବୋଲାଏ । ଏହି ଗଳ୍ପ ଚିତ୍ରଦିଏ ନାହିଁ; ଚରିତ୍ର ବିଶ୍ଳେଷଣ କରିଆରେ ଆବଶ୍ୟକୀୟ ଇଙ୍ଗିତ ପ୍ରଦାନ କରେ । ଅତୃପ୍ତ କୌତୂହଳରେ ପାଠକକୁ ଏହା ଘାରିଦିଏ ।

(୫) **ରୂପକଧର୍ମୀ ଗଳ୍ପ** ଛଦ୍ମ ଗଳ୍ପ । ପ୍ରତୀକଧର୍ମଠାରୁ ଏହା ସାମାନ୍ୟ ସ୍ୱତନ୍ତ୍ର । ଏପ୍ରକାର ଗଳ୍ପରେ ପ୍ରାଣୀରୂପକ କରିଆରେ ମାନବୀୟ ସମସ୍ୟା ଉତ୍ଥାପନ ଓ ସମାଧାନର ପ୍ରଚେଷ୍ଟା କରାଯାଇଥାଏ । ଚରିତ୍ର ରୂପକ, ଘଟଣାରୂପକ ଏଭଳି ଦୁଇଟି ରୀତିର ରୂପକ ଗଳ୍ପ ପରିଲକ୍ଷିତ ହୁଏ । ସ୍ଥଳବିଶେଷରେ ପ୍ରାଚୀନ ଗଳ୍ପକୁ ରୂପକଭାବେ ବ୍ୟବହାର କରାଯାଇଥାଏ ।

(୬) ଶୈଳୀ ପ୍ରସଙ୍ଗରେ ଆଲୋଚିତ । ଦେଖନ୍ତୁ 'ପ୍ରତିଭାତ' କ୍ରମ - ୧୪ ।

## (ଚ) ଆକାର ଦୃଷ୍ଟିରୁ :

ଆକାର ଦୃଷ୍ଟିରୁ କ୍ଷୁଦ୍ରଗଳ୍ପ ୪ ପ୍ରକାର ହୋଇପାରେ ଯଥା -

(୧) ମିନି (୨) ଆଭାସ (୩) ପରିମିତ ଓ (୪) ଦୀର୍ଘ ।

(ଆକାର ଆୟତନ ପ୍ରସଙ୍ଗ ଦେଖନ୍ତୁ । ଆଭାସଗଳ୍ପ ପାଇଁ 'ରେଖାଚିତ୍ର ଓ କ୍ଷୁଦ୍ରଗଳ୍ପ' ମଧ୍ୟ ଦେଖନ୍ତୁ ।)

## (ଛ) ଉପଯୋଗିତା ଦୃଷ୍ଟିରୁ :

ଉପଯୋଗିତା ଦୃଷ୍ଟିରୁ କ୍ଷୁଦ୍ରଗଳ୍ପ ୪ ପ୍ରକାର ହୋଇପାରେ । ସେଗୁଡ଼ିକ ଯଥା (୧) ଶିଶୁଉପଯୋଗୀ ଗଳ୍ପ (୨) କିଶୋରଉପଯୋଗୀ ଗଳ୍ପ (୩) ଯୁବଉପଯୋଗୀ ଗଳ୍ପ

(୪) ପ୍ରୌଢ଼ ଓ ପ୍ରୌଢ଼ୋତ୍ତର ବୟସ ଉପଯୋଗୀ ଗଳ୍ପ ।

**(୧) ଶିଶୁଉପଯୋଗୀ ଗଳ୍ପ :-**

ଯେଉଁ ଗଳ୍ପର ବିଷୟ ଶିଶୁମାନଙ୍କ ମାନସିକତା ଉପଯୋଗୀ, ଯେଉଁ ଗଳ୍ପର ଚରିତ୍ର ଏବଂ ଯେଉଁ ଗଳ୍ପର ସମସ୍ୟା ଶିଶୁ-ସମସ୍ୟା ଭିତ୍ତିକ ସେ ସମସ୍ତଙ୍କୁ ଶିଶୁ ଉପଯୋଗୀ ଗଳ୍ପ କୁହାଯାଏ ।

ଶିଶୁ ଶିଳ୍ପୀ ଦ୍ୱାରା ରଚିତ ହେଲେ ତାହା ଆହରି ଅଭିନନ୍ଦନୀୟ ।

ଏପ୍ରକାର ଗଳ୍ପର ଦୈର୍ଘ୍ୟ ପରିମିତ, ଭାଷା ସରଳ ଏବଂ ଶିଶୁର ଭାଷାଜ୍ଞାନ ପରିସର ଅନ୍ତର୍ଗତ ହେବା ଉଚିତ । ଏଥିରେ ଶିଶୁ ମାନସିକତାକୁ ପ୍ରୋତ୍ସାହନ, ଲାଳନ ଓ ପରିମାର୍ଜନ ଦେବା ଲକ୍ଷ୍ୟରେ ଅଜ୍ଞାତ ଓ ଅଳ୍ପଜ୍ଞାତ ତଥ୍ୟ ସନ୍ନିବେଶ କରାଯାଇଥାଏ । ଶିଶୁ ମନସ୍ତତ୍ତ୍ୱର ବହୁ ଅଜ୍ଞାତ ଓ ଦୁସ୍ତର ଦିଗ ପ୍ରତି ଯଥୋଚିତ ଧ୍ୟାନ ଦିଆଯାଇ ମଧ୍ୟ ଏ ପ୍ରକାର ଗଳ୍ପ ରଚିତ ହୁଏ ।

ପୁରାଣ କଥା, ଇତିହାସ କଥା, ଧର୍ମକଥା ଓ ବିଜ୍ଞାନ କଥା ଆଶ୍ରୟରେ ଏ ପ୍ରକାର ଗଳ୍ପ ରଚିତ ହେବା ଶିଶୁର ଉତ୍କଣ୍ଠା ଓ ଆଗ୍ରହ ରକ୍ଷା ଦୃଷ୍ଟିରୁ ଅବଶ୍ୟ କରଣୀୟ । ଶିଶୁର ଚେତନାରେ ବ୍ୟାପ୍ତି, ଔଦାର୍ଯ୍ୟ, ଓ ସଦ୍‌ଗୁଣାନୁରକ୍ତି ସୃଷ୍ଟି କରାଇପାରିଲେ ଏ ପ୍ରକାର ଗଳ୍ପ ଉତ୍ତୀର୍ଣ୍ଣ ହୁଏ ।

ସାମାଜିକ ପରିପ୍ରେକ୍ଷୀରେ ଶିଶୁର ସରଳବିଶ୍ୱାସ, ଜିଜ୍ଞାସା, କୌତୂହଳ ଯେଉଁ ହାସ୍ୟକର ଅଥବା କରୁଣ ପରିସ୍ଥିତି ସୃଷ୍ଟିକରେ ତାହାର ରୂପାୟନ ଏ ଧାରାର ସର୍ବୋଚ୍ଚ ସଫଳତା ।

**(୨) କିଶୋରଉପଯୋଗୀ ଗଳ୍ପ :**

ଯେଉଁ ଗଳ୍ପର ବିଷୟ କିଶୋର ମାନସିକତାର କୌତୂହଳ, ଜିଜ୍ଞାସା, ଅନୁସନ୍ଧିତ୍ସା ଏବଂ ଚପଳ ଆଗ୍ରହ ଭିତ୍ତିକ ହୋଇଥାଏ ତାହାକୁ କିଶୋରଗଳ୍ପ କୁହାଯାଏ । କିଶୋର ଚରିତ୍ର ଅବଲମ୍ବନରେ କିଶୋର ଚେତନାର ବିଭିନ୍ନ ଦିଗ ଦର୍ଶାଇ ପାରୁଥିବା ଗଳ୍ପ ଏ ଧାରାର ସବୁଠୁ ସଫଳ ଗଳ୍ପ ।

ଏ ପ୍ରକାର ଗଳ୍ପ ସାମାନ୍ୟ ଦୀର୍ଘ ହୋଇଥାଏ । ଏହାର ପ୍ରସଙ୍ଗ ଗ୍ରାମୀଣ ବା ସହରୀ ବା ଜାଙ୍ଗଲିକ ଯେଉଁ ପୃଷ୍ଠଭୂମି ଆଶ୍ରିତ ହେଉ ପଛକେ ଚିରକାଳର କିଶୋର ସୁଲଭ ସମସ୍ୟାକୁ ଅଙ୍ଗୀଭୂତ କରିଥାଏ । ଗଳ୍ପର ଭାଷା ସରଳ ହୋଇପାରେ କିନ୍ତୁ ସାମାନ୍ୟ କ୍ଲିଷ୍ଟ ଓ ନବୀନ ଶବ୍ଦପଦର ପ୍ରୟୋଗ ହୋଇଥିଲେ କିଶୋର ପାଠକ ପାଇଁ ଶିକ୍ଷାପ୍ରଦ ହୋଇଥାଏ ।

କିଶୋର ଚେତନାର ସୀମା ସରହଦକୁ ବର୍ଦ୍ଧିତ କରାଇବା ପାଇଁ ଉପଯୋଗୀ ଭ୍ରମଣ, ଜୀବନୀ, ବିଜ୍ଞାନ, ଭୂତତ୍ତ୍ୱ, ଭୂଗୋଳ, ମହାକାଶ, ସାଗର ସମ୍ବନ୍ଧୀୟ ଅନୁଭୂତି ବିଶିଷ୍ଟ ଗଳ୍ପ ଏହି ଧାରାର ସବୁଠୁ ଗ୍ରହଣୀୟ ରୂପ ।

ଅନ୍ୟଥା ସ୍ୱୟଂ କିଶୋର ଚରିତ୍ର ଦୃଷ୍ଟିରେ ତାର ଆଖପାଖର ପରିବେଶ ଓ ପରିସ୍ଥିତି ପ୍ରତି ଯେଉଁ ପ୍ରତିକ୍ରିୟା ସୃଷ୍ଟି ହୁଏ ତାହାର ପ୍ରକାଶ ମଧ୍ୟ ଏହି ପ୍ରକାର ଗଳ୍ପର ପରିସରଭୁକ୍ତ ।

## (୩) ଯୁବ ଉପଯୋଗୀ ଗଳ୍ପ :

ଯେଉଁ ଗଳ୍ପରେ ଯୁବ-ଚରିତ୍ର ଠାରେ ଯୁବ ଜନୋଚିତ ଉତ୍ସାହ, ପ୍ରେରଣା, ବିକ୍ରମ, ସାହସ, ସ୍ପର୍ଦ୍ଧା ଓ ଆବେଗ ରୂପାୟିତ ହୋଇଥାଏ ତାହାକୁ ଯୁବ ଉପଯୋଗୀ ଗଳ୍ପ କୁହାଯାଏ ।

ଏଥିରେ କେତେକ ସ୍ଥଳରେ ଯୌନ ମାନସିକତାର ବିବିଧ ପ୍ରକାଶ ରୂପାୟିତ ହୋଇଥାଏ । ଯୁବଜନୋଚିତ ପ୍ରେମ-ପ୍ରଣୟ, ସ୍ୱପ୍ନ-ଯୋଜନା, ଆକାଂକ୍ଷା-ଆଶା, କଳ୍ପନା-ଭାବନା, ଯୌନ ପୀଡ଼ା ଏବଂ ତଜ୍ଜନିତ ପ୍ରତିକ୍ରିୟାଦିର ପ୍ରକାଶ ଘଟିଥିବା ଗଳ୍ପ ଏହି ଧରଣର । ତେବେ ସାମାଜିକ-ରାଜନୀତିକ-ସାଂସ୍କୃତିକ ପରିପ୍ରେକ୍ଷୀରେ ଯୁବପୀଢ଼ିର ଭାବଭାବନା ଓ କ୍ରିୟାକଳାପ; ମୂଲ୍ୟବୋଧ ପ୍ରତି ପ୍ରତିକ୍ରିୟା; ଅତୀତ ପ୍ରତି ଦୃଷ୍ଟିକୋଣ; ଭବିଷ୍ୟତର ସମ୍ଭାବନା ସର୍ବୋପରି ଆତ୍ମମୂଲ୍ୟ ନିର୍ଦ୍ଧାରଣରେ ଯୁବକର ସ୍ୱତନ୍ତ୍ରତା ଭିତ୍ତିକ ଗଳ୍ପ ଏହି ପର୍ଯ୍ୟାୟର ଉତ୍ତମ ଗଳ୍ପ ।

କ୍ରୀଡ଼ା, ଦୁଃସାହସିକ ଅଭିଯାନ, ଶିକାର, ରହସ୍ୟ ସଂଧାନ ପ୍ରଭୃତି ବିଷୟ ଭିତ୍ତିରେ ଏ ପ୍ରକାର ଗଳ୍ପ ବେଶ୍ ପାଠକୀୟ ପ୍ରଶସ୍ତିପାଏ ।

ଏଥିରୁ ଯୁବ ପୀଢ଼ି ପାଇଁ ପ୍ରେରଣା ଓ ପ୍ରଚୋଦନା ସୁଲଭ ହେବା ଏ ଧରଣର ଗଳ୍ପର ସଫଳତା ।

## (୪) ପ୍ରୌଢ଼ ଓ ପ୍ରୌଢ଼ୋତ୍ତର ବୟସ ଉପଯୋଗୀ ଗଳ୍ପ :

ଯେଉଁ ଗଳ୍ପରେ ପ୍ରୌଢ଼ମଣିଷର ସଂସାରୀ ଭାବଭାବନା ଓ ଜୀବନସଂଗ୍ରାମର ଲହୁଲୁହାଣ ପରିସ୍ଥିତି ଅନ୍ତର୍ଗତ ହୋଇଥାଏ ତାହାକୁ ପ୍ରୌଢ଼ଉପଯୋଗୀ ଗଳ୍ପ କୁହାଯାଏ । ଏହାର ଉତ୍ତରବର୍ତ୍ତୀ ହେଲେ ତାହା ପ୍ରୌଢ଼ୋତ୍ତର ବୟସ ଉପଯୋଗୀ ଗଳ୍ପ ହୁଏ ।

ଏଥିରେ ଜୀବନ ଜଞ୍ଜାଳର ବିଚିତ୍ର ଓ ଅନାସ୍ୱାଦିତ ରୂପ, ବହୁବିଧ ଯଥା ଆର୍ଥିକ-ନୈତିକ-ପାରିବାରିକ-ଦାପ୍ତରିକ-ବୃତ୍ତିଗତ ସମସ୍ୟାବଳୀ ଏବଂ ସମାଜ ପ୍ରତି ସ୍ୱୀୟ ଦୃଷ୍ଟିଭଂଗୀ ପ୍ରକଟିତ ହୁଏ । ବୟସାନୁସାରେ ସଂସାରକୁ ଭୋଗ କରିପାରିନଥିବା ଜନିତ

ଅତୃପ୍ତି, ଜୀବନରେ ଭୌତିକ ବା ଆଧ୍ୟାତ୍ମିକ ଉନ୍ନତି କରିପାରିନଥିବାର ଅସନ୍ତୋଷ ଏବଂ ଦାୟାଦ ମାନଙ୍କ ଅବକ୍ଷୟର ପୀଡ଼ାରେ ଏ ପ୍ରକାର ଗଳ୍ପ-ଚରିତ୍ର ପ୍ରାୟତଃ ପୀଡ଼ିତ ଥାଏ । ସମୟ ସମୟରେ ଏହା ଅପରିତୃପ୍ତ ଯୌନକାମନାର ବିକଟତା ଦର୍ଶାଇଥାଏ । ତହିଁରୁ କୁତ୍ସିତତା ଯେତିକି ପ୍ରକଟିତ ହୁଏ ପାଠକକୁ ସେତିକି ସଚେତନତା ମିଳେ ।

ଏପ୍ରକାର ଗଳ୍ପରେ ଆଶ୍ୱାସନା, ଆଧ୍ୟାତ୍ମ ଜିଜ୍ଞାସା, ଦାର୍ଶନିକ ପ୍ରେରଣା ଏବଂ ଈଶ୍ୱରୀୟ ତଥା ମାନବୀୟ ସେବା ନିରତ ହେବାର ପ୍ରେରଣା ସୁଲଭ ହେଲେ ସ୍ୱୟଂ ପ୍ରୌଢ଼ ପାଠକ ଏହାକୁ ଆଗ୍ରହରେ ଗ୍ରହଣ କରିଥାଏ ।

## (ଢ) ବିବିଧ :

ତଦ୍ଭିନ୍ନ ଆଉକେତେକ ପ୍ରକାର ଗଳ୍ପ ସୁଲଭ ହୁଏ । ତାହାକୁ 'ବିବିଧ' ପ୍ରକାର କୁହାଯାଉ ।

(୧) ଅନୁବାଦ ଗଳ୍ପ (୨) ଫାଣ୍ଟାସି ଗଳ୍ପ (୩) ମାନବେତର ଗଳ୍ପ (୪) ବିଦେଶ ପଟ୍ଟଭୂମିର ଗଳ୍ପ ଓ (୫) ଅନୁସୃତ ଗଳ୍ପ ।

(୧) କୌଣସି ଭିନ୍ନଭାଷାର ଗଳ୍ପ ଭାଷାନ୍ତରିତ ହୋଇଥିଲେ ତାହାକୁ **ଅନୁବାଦ ଗଳ୍ପ** କୁହାଯାଏ । ଅନୁବାଦର ପ୍ରଥମ ସର୍ତ୍ତ ହେଉଛି ଅବିକଳ ଭାଷାନ୍ତର । ତେବେ ଅନୁବାଦକ ବାକ୍ୟଗଠନ, ବାକ୍ୟଦୈର୍ଘ୍ୟ ଭାଙ୍ଗିପାରନ୍ତି କିନ୍ତୁ ଉଦ୍ଦେଶ୍ୟ ଓ ଭାବକୁ ଆଦୌ ବିକୃତ କରିପାରିବେ ନାହିଁ । ମୂଳଗଳ୍ପର ପରିବେଶ-ପରିସ୍ଥିତି ମଧ୍ୟ ଏଥିରେ ଅବିକୃତ ରହେ । ଅନୁବାଦଗଳ୍ପ ମୂଳଗଳ୍ପର ମୂଳଭାଷାରୁ ଅନୂଦିତ ହେବା ଉଚିତ । କେତେକ କ୍ଷେତ୍ରରେ ଭାବାନୁବାଦ କରାଯାଇଥାଏ । ଏହା ମୂଳଗଳ୍ପର ଆକାର ସଂକ୍ଷିପ୍ତ କରିଥାଏ । ଉଭୟ କିନ୍ତୁ ଅନୁବାଦଗଳ୍ପ ପର୍ଯ୍ୟାୟଭୁକ୍ତ ।

(୨) **ଫାଣ୍ଟାସି ଧର୍ମୀ ଗଳ୍ପ** ଅବାସ୍ତବ ଓ ଅସମ୍ଭବ ପଟ୍ଟଭୂମିରେ ଚରିତ୍ରର ଅଦ୍ଭୁତ କରଣୀ ଦର୍ଶାଇଥାଏ ଏବଂ ଅନାକାଙ୍କ୍ଷିତ କଥାପରିଣତିରେ ପହଞ୍ଚାଇଥାଏ । ଏପ୍ରକାର ଗଳ୍ପରେ ଅଶରୀରୀ, ଅଦ୍ଭୁତ ଶରୀରୀ ପ୍ରାଣୀ ଚରିତ୍ର ହୋଇଥାନ୍ତି । ଚରିତ୍ର ଇତର ପ୍ରାଣୀ ହେଉ ବା ମନୁଷ୍ୟ ହେଉ ତା'ର ଥାଏ ଅତୀନ୍ଦ୍ରିୟ କ୍ଷମତା । ସେ ପର୍ବତ ଟେକି ଧରିପାରେ, ନିଜର ଆକାର ସଙ୍କୁଚିତ କରିପାରେ ଏପରିକି ଅଦୃଶ୍ୟ ହୋଇପାରେ ମଧ୍ୟ । ମାତ୍ର ତଦ୍ୱାରା ମୂଳ ଚରିତ୍ର ଓ ପାଠକର କୌଣସି ଗୁରୁତ୍ୱପୂର୍ଣ୍ଣ ଉପଲବ୍ଧି ଘଟୁଥିବା ଜରୁରୀ ।

(୩) ଯେଉଁ ଗଳ୍ପରେ ମାନବେତର ଚରିତ୍ର କିମ୍ବା ମାନବେତର ବସତି ବିଷୟ ରୂପେ ବ୍ୟବହୃତ ହୋଇଥାଏ ଏବଂ ତହିଁରୁ ପ୍ରାଣୀଜଗତ (ଉଦ୍ଭିଦ ମଧ୍ୟ)ର ରହସ୍ୟ

ସ୍ଫୁରିତ ହେଉଥାଏ ତାହାକୁ ମାନବେତର ଗଳ୍ପ କୁହାଯାଏ । ଲଘୁ ଅର୍ଥରେ ଯେଉଁ ଗଳ୍ପରେ ପ୍ରାଣୀଚରିତ୍ରର ଚରିତ ବିବୃତ ହୋଇଥାଏ ତାହା ମାନବେତର ଗଳ୍ପ । ମାନବେତର ଗଳ୍ପରେ ପ୍ରାଣୀଟି ଆଂଶିକ ବା ସମୁଦାୟଭାବେ ଉପଯୋଗ ହୋଇପାରେ ।

(୪) ଲେଖକର ସ୍ୱଦେଶ ବହିଃସ୍ଥ ଭିନ୍ନଦେଶର ପୃଷ୍ଠଭୂମିରେ ଲେଖକଙ୍କ ନିଜ ଅଭିଜ୍ଞତା ଆଧାରରେ ରଚିତ ଗଳ୍ପକୁ **ବିଦେଶ ପଟ୍ଟଭୂମି ବିଶିଷ୍ଟ ଗଳ୍ପ** କୁହାଯାଏ । ଏଥିରେ ବିଦେଶର ପରିବେଶ-ପରିସ୍ଥିତି-ଚରିତ୍ର ଏବଂ ସାମାଜିକ-ରାଜନୈତିକ-ସାଂସ୍କୃତିକ ବିଷୟ ଅନ୍ତର୍ଗତ ହୋଇଥାଏ, ମାତ୍ର ଲେଖକର ସ୍ୱଦେଶ ଚେତନାରେ ତାହା ତୁଳିତ ହୋଇ କଥା-ବକ୍ତବ୍ୟ ନିର୍ମିତ ହୋଇଥାଏ । ଅନ୍ୟଥା ଏପ୍ରକାର ଗଳ୍ପ ବିଦେଶୀଗଳ୍ପ ମାତ୍ର ପାଲଟିଯାଏ ।

(୫) ବିଦେଶୀ ଓ ଭିନ୍ନଭାଷୀ ଗଳ୍ପ ଏବଂ ଭିନ୍ନ ଆଙ୍ଗିକର ସାହିତ୍ୟ ଅନୁସରଣରେ ଯେଉଁ ନୂତନ ଗଳ୍ପ ନିର୍ମିତ ହୁଏ ତାହା **ଅନୁସୃତ ଗଳ୍ପ** । ଏପ୍ରକାର ଗଳ୍ପ କେବଳ ଭାବ ବା ଅଭିପ୍ରାୟ ଅବିକୃତ ରଖି ପରିବେଶ, ଘଟଣା, ଚରିତ୍ର ଓ ଭାଷା ପରିବର୍ତ୍ତିତ କରିପାରେ । ସ୍ୱୀକାର କରାଯାଇନଥିଲେ ଏପ୍ରକାର ଗଳ୍ପ ମୌଳିକ ରଚନାର ପରିଚୟ ପାଇଯାଇପାରେ । ତେବେ ତାହା ଅନୁସୃଜନର ପ୍ରତିଭା ନିର୍ଭରଶୀଳ । ପୁରାଣ, ଇତିହାସ, ଲୋକଗଳ୍ପ ଓ ମହାକାବ୍ୟରୁ ପ୍ରସଙ୍ଗ-ଚରିତ୍ର ଚୟନ କରି ଲେଖକ ଅନୁସୃତ ଗଳ୍ପ ନିର୍ମାଣ କରିଥାନ୍ତି ।

# ପ୍ରମେୟ

## କ୍ଷୁଦ୍ରଗଳ୍ପ ଓ ଅନ୍ୟାନ୍ୟ ସାହିତ୍ୟିକ ରୂପର ତୁଳନା

କ୍ଷୁଦ୍ରଗଳ୍ପ ଏଭଳି ଏକ ସଂହତ ଶିଳ୍ପକଳା ଯେ ଏହା ସାହିତ୍ୟର ଅନ୍ୟ କୌଣସି ବର୍ଗ ସହିତ ତୁଳନୀୟ ନୁହେଁ; ମାତ୍ର ସାହିତ୍ୟ ବିଶେଷତଃ ଗଦ୍ୟସାହିତ୍ୟରେ ଏପରି କେତେକ ରଚନା ଅଛି ଯାହା ଆକାର, ପ୍ରକାର ଓ ପ୍ରକାଶ ଦୃଷ୍ଟିରୁ କ୍ଷୁଦ୍ରଗଳ୍ପର ଭ୍ରମ ସୃଷ୍ଟିକରାଏ । ଏପରିକି ଏଭଳି ରଚନାକୁ କ୍ଷୁଦ୍ରଗଳ୍ପ ବୋଲି କେହି କେହି ଗ୍ରହଣ କରିବସନ୍ତି ମଧ୍ୟ ।

ରମ୍ୟରଚନା ବା ଲଳିତ ନିବନ୍ଧ ସେହିଭଳି ପ୍ରତାରଣା ସୃଷ୍ଟି କରୁଥିବା ଏକ ସାହିତ୍ୟରୂପ । ଏତଦବ୍ୟତୀତ ସ୍କେଚ୍, ଜୀବନୀ, ଡ଼ାଇରୀ, ଭ୍ରମଣବୃତ୍ତାନ୍ତ, ଅଭିଯାନ ବିବରଣୀ, ପତ୍ର, ସ୍ମୃତିଲିପି, ବିଜ୍ଞାନକଥା ପ୍ରଭୃତି ସମୟ ସମୟରେ କ୍ଷୁଦ୍ରଗଳ୍ପର ଭ୍ରମ ଉପୁଜାଇଥାନ୍ତି । ବସ୍ତୁତଃ ଏଗୁଡ଼ିକୁ ଭିତ୍ତିକରି କ୍ଷୁଦ୍ରଗଳ୍ପ ରଚିତ ହୋଇପାରେ ମାତ୍ର ଏଗୁଡ଼ିକ କ୍ଷୁଦ୍ରଗଳ୍ପ ନୁହନ୍ତି ।

ତେବେ ଏଠାରେ ଉପନ୍ୟାସ, ନାଟକ, ପ୍ରବନ୍ଧ, ଜୀବନୀ, ସ୍କେଚ୍ ପ୍ରଭୃତି ସହିତ କ୍ଷୁଦ୍ରଗଳ୍ପର ଏକ ତୁଳନାତ୍ମକ ଚିତ୍ର ପ୍ରଦତ୍ତ । ଏହା କ୍ଷୁଦ୍ରଗଳ୍ପର ବିଶେଷତ୍ୱ ପ୍ରକଟରେ ସହାୟକ ହେବ ।

### ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ :

ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ଉଭୟ କଥାପରିବାର ଅନ୍ତର୍ଗତ । ପ୍ରଥମଟି ସ୍ଥୂଳକାୟ ଦ୍ୱିତୀୟଟି କୃଶକାୟ । କିନ୍ତୁ ପ୍ରଥମର ସଙ୍କୁଚନରେ ଦ୍ୱିତୀୟ କିମ୍ବା ଦ୍ୱିତୀୟର ସ୍ଫୀତିରେ ପ୍ରଥମ ସୃଷ୍ଟି ହୋଇପାରେ ନାହିଁ (ଦୀର୍ଘାୟତନ ଗଳ୍ପ ଦେଖନ୍ତୁ)

ଉପନ୍ୟାସ ମୁଖ୍ୟଚରିତ୍ରର ବହୁବିଧ ଦିଗ ଦର୍ଶାଏ । ଏଣୁ ଏଥିରେ ଅନେକ ଘଟଣା, ଅନେକ ଚରିତ୍ର ଅନେକ ପରିସ୍ଥିତି, ଅନେକ ପରିବେଶ ଓ ଅନେକ ମନଃସ୍ଥିତି ସଂଯୁକ୍ତ ତଥା ପ୍ରକଟିତ ହୋଇଥାଏ ।

କ୍ଷୁଦ୍ରଗଳ୍ପ ମୁଖ୍ୟଚରିତ୍ରର ଏକକ ଦିଗ ଉଦ୍ଭାସିତ କରାଏ । ଏଣୁ ଏଥିରେ ଏକ ବା ଦୁଇଟି ଘଟଣା, ଏକ ବା ଦୁଇ ତିନୋଟି ଚରିତ୍ର, ଏକମାତ୍ର ପରିସ୍ଥିତି, ଏକ ବା ଦୁଇ ପରିବେଶ ଚିତ୍ର ଏବଂ ଏକ ବା ଦୁଇଟି ମନଃସ୍ଥିତିର ସଂଯୋଗ ତଥା ପ୍ରକଟ ହୋଇଥାଏ ।

ଉପନ୍ୟାସର କଥାଭାଗ ଦୀର୍ଘ ଓ ଏହା ଏକ କଥାବୃତ୍ତରେ ପରିଣତ ହୋଇ ପାଠକର ଉଦ୍ଦୀପିତ କଥାପିପାସାକୁ ପରିତୃପ୍ତି ଦିଏ । ଉପନ୍ୟାସ ପାଠରୁ ପାଠକ ଏକ ବୃହତ କାଳଖଣ୍ଡର ବହୁବିଧ ପ୍ରସଙ୍ଗ ସଂସ୍ପର୍ଶରେ ଆସେ । ମାତ୍ର କ୍ଷୁଦ୍ରଗଳ୍ପରେ ସଂକ୍ଷିପ୍ତ କାଳଖଣ୍ଡ, ଏପରିକି ମୁହୂର୍ତ୍ତମାତ୍ରର ପ୍ରସଙ୍ଗ ଅଙ୍ଗୀଭୂତ ହୋଇଥାଏ ଏବଂ ତାହା କଥାପିପାସା ତୃପ୍ତ କରେନାହିଁ ବରଂ ଉଦ୍ଦୀପ୍ତ କରାଏ । ଉପନ୍ୟାସରେ ଚରିତ୍ରର ବିକାଶ ଘଟେ, କ୍ଷୁଦ୍ରଗଳ୍ପରେ ଚରିତ୍ରର ପ୍ରକାଶ ଘଟେ ।

ଉପନ୍ୟାସ ବିସ୍ତୃତ ଓ ବର୍ଣ୍ଣନା ବିଳସିତ; କ୍ଷୁଦ୍ରଗଳ୍ପ ଭାବତୀବ୍ର ଓ ସଂକ୍ଷିପ୍ତ ।

ଉପନ୍ୟାସ ବ୍ୟାଖ୍ୟାତ; କ୍ଷୁଦ୍ରଗଳ୍ପ ବ୍ୟଞ୍ଜିତ ।

ଉପନ୍ୟାସ ଆକାଶ ହେଲେ କ୍ଷୁଦ୍ରଗଳ୍ପ ଆକାଶ ଛାତିରେ ଦେଦୀପ୍ୟ ଏକ ନକ୍ଷତ୍ର ।

ଉପନ୍ୟାସ ବନସ୍ତ ହେଲେ କ୍ଷୁଦ୍ରଗଳ୍ପ ଉପବନ ।

ଉପନ୍ୟାସ ବିଶାଳ ବନସ୍ପତି; କ୍ଷୁଦ୍ରଗଳ୍ପ ସରଳବର୍ଗୀୟ ନାରିକେଳ ବୃକ୍ଷ ।

## ନାଟକ ଓ କ୍ଷୁଦ୍ରଗଳ୍ପ :

ନାଟକ ମାନବଜୀବନର ସଂଘାତମୟ ଆକସ୍ମିକ ଘଟଣାକ୍ରାନ୍ତ ପରିସ୍ଥିତି ସମୂହର ଜଟିଳତାରେ ଚରିତ୍ରର ନିଗ୍ରହ ଓ ତହିଁରୁ ତାହାର ଉଧୁରିବାର ଦୃଶ୍ୟ-କାବ୍ୟ । ଏଥିରେ ଆକସ୍ମିକତା, ତୀବ୍ର ଉତ୍କଣ୍ଠା, ଦ୍ୱନ୍ଦ ଓ ପାରିସ୍ଥିତିକ ସଂଘାତର ଭୂମିକା ପ୍ରମୁଖ ।

କେବଳ ଏହି ଦୃଷ୍ଟିରୁ ନାଟକ ସହ କ୍ଷୁଦ୍ରଗଳ୍ପ ତୁଳିତ ହେଇପାରେ ।କାରଣ କ୍ଷୁଦ୍ରଗଳ୍ପରେ ମଧ ନାଟକର ଏହି ଲକ୍ଷଣ ଅତ୍ୟନ୍ତ ବଳବତ୍ତର ଓ ଉପଯୋଗୀ । (ନାଟ୍ୟଧର୍ମୀ ଗଳ୍ପ ଦେଖନ୍ତୁ)

ମାତ୍ର ଆକାର, ବିଷୟ ବିସ୍ତାର, ଚରିତ୍ର ସଂଖ୍ୟା, ସମସ୍ୟା ଓ ସମୟ ଦୃଷ୍ଟିରୁ ଏହା ଏକାଙ୍କିକା ସହିତ ତୁଳନୀୟ ।

ଉଭୟ କ୍ଷୁଦ୍ରଗଳ୍ପ ଓ ଏକାଙ୍କୀ ସ୍ୱଳ୍ପ ସମୟ ମଧରେ ବିନୋଦ ଓ ଶିକ୍ଷଣୀୟତା ପ୍ରଦାନ କରୁଥିବା ଲୋକପ୍ରିୟ କଳାରୂପ । ଗୋଟିଏ ନିଭୃତରେ ଏକାକୀ ଉପଭୋଗ କରାଯାଏ ଅନ୍ୟଟି ଜନସମାବେଶରେ ସମୁଦାୟ ସହ ଆସ୍ୱାଦନ କରାଯାଏ ।

ପାର୍ଥକ୍ୟ ଦୃଷ୍ଟିରୁ ଏକାଙ୍କିକା ମଞ୍ଚ, ମଞ୍ଚକଳା, ମଞ୍ଚ ସଜ୍ଜା, ମଞ୍ଚ ପରିଚାଳନା ଦର୍ଶକ, ଅଭିନୟ, ଅଭିନେତା, ନିର୍ଦ୍ଦେଶକ, ସ୍ମାରକ ଇତ୍ୟାଦିର ସମବାୟରେ ପ୍ରକଟିତ ହେଉଥିବା ଖଣ୍ଡିତ ଜୀବନ କଥା ହୋଇଥିବା ବେଳେ କ୍ଷୁଦ୍ରଗଳ୍ପ ଲିଖିତ ପାଠ । ଅନ୍ୟଥା

ସଂକ୍ଷିପ୍ତ ପ୍ରସଙ୍ଗ ମାଧ୍ୟମରେ ଜୀବନ-ଚିତ୍ରର ଝଲକ ଦେଖାଇବାରେ ଉଭୟ ସମାନ ପ୍ରଭାବଶାଳୀ ।

## ପ୍ରବନ୍ଧ ଓ କ୍ଷୁଦ୍ରଗଳ୍ପ :

ଆକାରଦୃଷ୍ଟିରୁ ପ୍ରବନ୍ଧ ଓ କ୍ଷୁଦ୍ରଗଳ୍ପ ମଧ୍ୟରେ ପାର୍ଥକ୍ୟ ନାହିଁ । ଅନୁଚ୍ଛେଦୀକରଣ ମାଧ୍ୟମରେ ପ୍ରସଙ୍ଗ କ୍ରମିକତା ଓ ପରସ୍ପର ସଂଲଗ୍ନ ଦୁଇ ଭିନ୍ନ ଉପପ୍ରସଙ୍ଗର ସଂଯୋଗ କରିବାଦୃଷ୍ଟିରୁ ଉଭୟ ସମାନ ।

ପ୍ରବନ୍ଧ କୌଣସି ପ୍ରସଙ୍ଗକୁ ସୁବୋଧ କରିବାକୁ ତହିଁରେ ଏକ ପରିଚିତ ଗଳ୍ପ ପ୍ରୟୋଗ କରିପାରେ ଯେମିତି ଗଳ୍ପ ମଧ୍ୟ କୌଣସି ପ୍ରସଙ୍ଗକୁ ପ୍ରାମାଣିକ ଓ ତଥ୍ୟାତ୍ମକ କରିବାକୁ ପ୍ରବନ୍ଧ-ଗର୍ଭିତ ହୋଇପାରେ । (ପ୍ରବନ୍ଧଧର୍ମୀ ଗଳ୍ପ ଦେଖନ୍ତୁ)

ପ୍ରବନ୍ଧର ଅନ୍ୟତମ ପ୍ରକାଶ ଲଳିତନିବନ୍ଧ ବା ରମ୍ୟରଚନା ଭାଷା, ଭାବ, ଆବେଗ ଦୃଷ୍ଟିରୁ ରମ୍ୟକଥନ କ୍ଷେତ୍ରରେ ବେଳେବେଳ କ୍ଷୁଦ୍ରଗଳ୍ପ ପର୍ଯ୍ୟାୟର ହୋଇଯାଏ । ଏଣୁ ଉଭୟ ମଧ୍ୟରେ ତାରତମ୍ୟ ସଙ୍କୁଚିତ ହୋଇଯାଏ ।

ପାର୍ଥକ୍ୟ ହେଉଛି ପ୍ରବନ୍ଧ ଉଦ୍ଦେଶ୍ୟନିଷ୍ଠ । ଉତ୍‌ଥାପିତ ପ୍ରସଙ୍ଗର ପରିଚ୍ଛନ୍ନତା ସୃଷ୍ଟିକରି ପରିଣତିରେ ପ୍ରସଙ୍ଗର ପରିପୁଷ୍ଟି ସାଧନ ଉଦ୍ଦେଶ୍ୟ ବହନ କରି ପ୍ରବନ୍ଧ ରଚିତ ମାତ୍ର କ୍ଷୁଦ୍ରଗଳ୍ପ ଜୀବନଚିତ୍ର ପ୍ରକଟ ଅବସରରେ ଚରିତ୍ରଚେତନାର ଅନୁକୂଳ ହେଇ ପରିଣତିରେ ସୁଦ୍ଧା ଅନାକାଙ୍‌କ୍ଷ ଓ ଅପ୍ରତ୍ୟାଶିତ ।

ସାମ୍ୟ ହେଉଛି—ପ୍ରବନ୍ଧ ପରି କ୍ଷୁଦ୍ରଗଳ୍ପ ଯୌକ୍ତିକ ଭାବେ ସଂକ୍ଷିପ୍ତ, ବୈୟକ୍ତିକ ଓ ଦର୍ଶନଗର୍ଭରେ ଅକୁଣ୍ଠିତ ।

## ଜୀବନୀ ଓ କ୍ଷୁଦ୍ରଗଳ୍ପ :

ଆକାର ଦୃଷ୍ଟିରୁ ସଂକ୍ଷିପ୍ତ ହେଲେ କୌଣସି 'ଜୀବନୀ' କ୍ଷୁଦ୍ରଗଳ୍ପର ଭ୍ରମ ସୃଷ୍ଟି କରିପାରେ କାରଣ କ୍ଷୁଦ୍ରଗଳ୍ପରେ ଗୋଟିଏ କଳ୍ପିତ ଚରିତ୍ରର ଜୀବନବୃତ୍ତାନ୍ତର ସଂକ୍ଷିପ୍ତ ଅଧ୍ୟାୟ ଝଲସିତ ହୋଇଥାଏ । ମାତ୍ର ଜୀବନୀର ଅଧ୍ୟାୟ ଯେତେ ଚଟୁଳ, ଚମତ୍କାର, ରସଯୁକ୍ତ, ଘଟଣାପ୍ରଖର ଏବଂ ଅନାକାଙ୍‌କ୍ଷ ହେଲେହେଁ ତାହା କ୍ଷୁଦ୍ରଗଳ୍ପ ହୁଏନାହିଁ କାରଣ ଜୀବନୀର ଜୀବୀକୁ ଆମେ ଚିହ୍ନିଥାଉ କ୍ଷୁଦ୍ରଗଳ୍ପର ଚରିତ୍ର ଚିହ୍ନାମଣିଷ ନୁହେଁ ଏକ ପ୍ରତୀକ ମଣିଷ ।

'ଜୀବନୀ' ଇତିହାସ, ଲୋକଶ୍ରୁତି ଏବଂ ସମସାମୟିକ ଅନ୍ୟାନ୍ୟ ତଥ୍ୟର ପ୍ରମାଣ ଅପେକ୍ଷା ରଖେ ମାତ୍ର କ୍ଷୁଦ୍ରଗଳ୍ପ ଏକାବେଳକେ ସ୍ୱୟଂରୂପ ଏବଂ ସ୍ୱୟଂନିର୍ଭର ତଥା ସ୍ୱୟଂସମ୍ପୂର୍ଣ୍ଣ ।

ତେବେ ଜୀବନୀକୁ ଆଶ୍ରୟକରି କ୍ଷୁଦ୍ରଗଳ୍ପ ରଚିତ ହୋଇପାରେ; ଜୀବନୀରେ ଗଳ୍ପ ମଧ୍ୟ ପ୍ରସଙ୍ଗୀଭୂତ ହୋଇପାରେ । ଜୀବନୀ ହେଉଛି ଜୀବନ ସମ୍ପର୍କୀୟ ନିର୍ବାଚିତ ଗଳ୍ପ ଏବଂ ଗଳ୍ପ ହେଉଛି ନିର୍ବାଚିତ କାଳ୍ପନିକ ଚରିତ୍ରର ନିର୍ବାଚିତ ଜୀବନାଂଶ ।

## ରେଖାଚିତ୍ର ଓ କ୍ଷୁଦ୍ରଗଳ୍ପ :

ରେଖାଚିତ୍ର କ୍ଷୁଦ୍ରଗଳ୍ପର ଏକ ରୀତି ଏଣୁ ଉଭୟ ମଧ୍ୟରେ ପାର୍ଥକ୍ୟ ନିରୂପଣରେ ଜଟିଳତା ସୃଷ୍ଟି ହୁଏ; ମାତ୍ର ଉଭୟ ମଧ୍ୟରେ ସାଦୃଶ୍ୟ ଓ ପାର୍ଥକ୍ୟ ପର୍ଯ୍ୟାପ୍ତ ।

ରେଖାଚିତ୍ର ବା ସ୍କେଚ୍ (ଚିତ୍ରକଳାରେ) ଯେମିତି ଚିତ୍ରାଭାସ ଦେଉଥିଲେ ହେଁ ପୂର୍ଣ୍ଣ ଓ ପ୍ରାଞ୍ଜଳ ଚିତ୍ର ନୁହେଁ କେବଳ ଚିତ୍ରର ଆକାର ସୂଚକ; ସେମିତି (ସାହିତ୍ୟରେ) ରେଖାଚିତ୍ର ରଚନା କୌଣସି ପ୍ରସଙ୍ଗ ବା ବ୍ୟକ୍ତିର ଗଭୀରତା ସ୍ପର୍ଶୀ କଥାରୂପ ନୁହେଁ ଏକ ଲଘୁସଞ୍ଚରଣ ମାତ୍ର । ଏହା ଘଟଣା, ଦୃଶ୍ୟ, ବ୍ୟକ୍ତି ବା ମନୋଭାବ ପ୍ରତି ତତ୍‌କ୍ଷଣ ଉଦିତ ମନୋଭାବର ତତ୍‌କାଳ ପ୍ରକାଶ । ଏଣୁ ଏଥିରେ ଭାବର ଗାମ୍ଭୀର୍ଯ୍ୟ ନଥାଏ କି କଥାକାରର ଦାୟିତ୍ୱ ସଚେତନତା କି ଯୌକ୍ତିକତା ପ୍ରତି ଦୃଷ୍ଟି ନଥାଏ ।

'କ୍ଷୁଦ୍ରଗଳ୍ପ'ରେ ଚରିତ୍ର ବା ଘଟଣା ବା ଦୃଶ୍ୟର ଯେଉଁ ସୂକ୍ଷ୍ମତମ ଅଂଶ ଲେଖକର ଲେନ୍ସରେ ଧରାଦେଇଥାଏ ତାହାର ତ୍ରିପାର୍ଶ୍ୱିକ ଚିତ୍ର ସେ ଅବଶ୍ୟ ଉତ୍ତୋଳିତ କରିଥାଏ । ଏଣୁ କ୍ଷୁଦ୍ରଗଳ୍ପ ବିଚାର ଲୋଡ଼ିପାରେ ବ୍ୟାଖ୍ୟା ଆବଶ୍ୟକ କରିପାରେ ମାତ୍ର ସ୍କେଚ୍ ତାର ସମଗ୍ର ରୂପ-ରଙ୍ଗ ଏକାବେଳକେ ପ୍ରକଟ କରିସାରିଥାଏ ।

ସାମାନ୍ୟ ହେଲେବି ଗଳ୍ପ ଗତିଶୀଳ, ଏହାର ପ୍ରାରମ୍ଭ-ପ୍ରବାହ-ପରିଣତି ଅଛି ମାତ୍ର ସ୍କେଚ୍ ବା ରେଖାଚିତ୍ରରେ ପ୍ରସଙ୍ଗର ସ୍ଥିରଚିତ୍ର ହିଁ ପ୍ରକଟିତ ହୋଇଥାଏ । ସ୍କେଚ୍‌ରେ କ୍ରିୟା ପ୍ରଦର୍ଶିତ ହୁଏ ମାତ୍ର କ୍ଷୁଦ୍ରଗଳ୍ପରେ କ୍ରିୟା-ପ୍ରତିକ୍ରିୟା ଏବଂ ପ୍ରତିକ୍ରିୟାର ପ୍ରତିକ୍ରିୟା ମଧ୍ୟ ପ୍ରକାଶିତ ହୋଇପାରେ ।

ମୋଟ ଉପରେ କ୍ଷୁଦ୍ରଗଳ୍ପ ଏକ ସ୍ୱୟଂସମ୍ପୂର୍ଣ୍ଣ, ସୁସମୃଦ୍ଧ, ସ୍ୱପରିଚୟରେ ପରିଚିତ ସାହିତ୍ୟରୂପ । ଏହା ଅନନ୍ୟ ଓ ଅତୁଳନୀୟ ।



# ପ୍ରାକକଥନ

ଏ ପର୍ଯ୍ୟାୟରେ ମୁଁ କ୍ଷୁଦ୍ରଗଳ୍ପ ସଂପର୍କରେ - କ୍ଷୁଦ୍ରଗଳ୍ପର ଉପାଦାନ ଏବଂ ଆଭିମୁଖ୍ୟ ସଂପର୍କରେ - ମୋ ନିଜର ବକ୍ତବ୍ୟ ଉପସ୍ଥାପିତ କରିଛି ।

୧. ପ୍ରତ୍ୟେକ ସାର୍ଥକ ଗଳ୍ପର ଏକ ଉତ୍ତମ ଶିରୋନାମ ରହିବା ଜରୁରୀ । ତାହା ତୀର୍ଯ୍ୟକ, ସୂଚନାଧର୍ମୀ ଓ ପ୍ରତୀକାତ୍ମକ ହେବା ଭଲ । ଏହା ପାଠକୀୟ ଧ୍ୟାନଆକର୍ଷକ ହୋଇପାରିବା ଉଚିତ ।

୨. ପ୍ରତ୍ୟେକ ସାର୍ଥକ ଗଳ୍ପର ପ୍ରାରମ୍ଭ ପ୍ରଭାବଶାଳୀ ଏବଂ ପ୍ରବହମାନ ହେବା ଉଚିତ । ତାହାର ପ୍ରଥମ ବାକ୍ୟ ବା ଅନୁଚ୍ଛେଦ ହିଁ ପରବର୍ତ୍ତୀ ଅନୁଚ୍ଛେଦ ପ୍ରତି ପାଠକର ଆଗ୍ରହକୁ ବାଟ କଢ଼େଇନେଉଥିବ ।

୩. ପ୍ରତ୍ୟେକ ସାର୍ଥକ ଗଳ୍ପ ଶବ୍ଦସାଶ୍ରୟୀ ଏଣୁ ସଂକ୍ଷିପ୍ତି ତାହାର ସ୍ୱରୂପ । ବ୍ୟାଖ୍ୟା ବିଶ୍ଳେଷଣ ବିରହିତ, ପରିବେଶ-ବାତାବରଣର ସୂଚନାତ୍ମକ ଚିତ୍ର ଯୁକ୍ତ ହୋଇ ତାହା ଅଳ୍ପରେ ଅନଳ୍ପର ସ୍ୱାଦ ଦେବା ଉଚିତ । ପୃଷ୍ଠା ଦୃଷ୍ଟିରୁ ଆଠପୃଷ୍ଠା ଯାଏ ହୋଇଥିବା ଭଲ ।

୪. ପ୍ରତ୍ୟେକ ସାର୍ଥକ ଗଳ୍ପ ସରଳ ଭାଷା ମଣ୍ଡିତ ହେବା ଉଚିତ । ସ୍ଥଳ ବିଶେଷରେ କ୍ଲିଷ୍ଟ ଶବ୍ଦ ପଦ ଥିଲେ ତାହା ଗଳ୍ପର ଭାବପ୍ରବାହ କ୍ଷେତ୍ରରେ ପ୍ରତିବନ୍ଧକ ହେଉନଥିବା ପ୍ରତି ଲକ୍ଷ୍ୟ ରଖାଯାଇଥିବା ଦରକାର ।

୫. ପ୍ରତ୍ୟେକ ସାର୍ଥକ ଗଳ୍ପ ତାହା ଯେଉଁ ବିଷୟରେ ଲେଖା ଯାଇଥାଉ ନା କାହିଁକି, ପାଠକକୁ ନୂଆକଥାଟିଏ ଭଳି ଲାଗିବା ଉଚିତ ।

୬. ପ୍ରତ୍ୟେକ ସାର୍ଥକ ଗଳ୍ପର ପରିଣତି ନାଟକୀୟ । ତାହା ପାଠକର ପୂର୍ବାନୁମାନକୁ ଏକାବେଳକେ ଉତ୍‌ଖାତ କରି ନପାରିଲେ ଅନ୍ତତଃ ଚରିତ୍ର ପ୍ରତି ସମମର୍ମିତାର ଅନୁଭୂତିରେ ସିକ୍ତ କରାଇ ପାରିଥିବା ଉଚିତ ।

୭. ପ୍ରତ୍ୟେକ ସାର୍ଥକ ଗଳ୍ପ ଜୀବନ ଓ ସଂସାର ସମସ୍ୟାରୁ ଉତ୍ତୀର୍ଣ୍ଣ ହେବାର କିଛି ସମ୍ଭାବନା, କିଛି ସନ୍ଦେଶ, କିଛି ଶୁଭଆଶା ଅବଶ୍ୟ ସଂପ୍ରେରିତ କରିପାରୁଥିବ ।

୮. ପ୍ରତ୍ୟେକ ସାର୍ଥକ କ୍ଷୁଦ୍ରଗଳ୍ପ କଥାବସ୍ତୁ, ଚରିତ୍ର, କଥାଦର୍ଶ କିମ୍ବା କଥାରୀତି କୌଣସି ଗୋଟିଏ ଦୃଷ୍ଟିରୁ ଅନନ୍ୟ ଓ ଆଲୋଡ଼ନକ୍ଷମ ହୋଇପାରିଥିବା ଉଚିତ । ଯେଉଁ ଗଳ୍ପ ଉପରୋକ୍ତ କୌଣସି ଦୃଷ୍ଟିରୁ ସ୍ମରଣୀୟ ହୋଇ ରହିନଥାଏ ତାହା ସାର୍ଥକତାର କଷଟୀରେ ଉତ୍ତୀର୍ଣ୍ଣ ନୁହେଁ ।

□□□

# ପ୍ରଣିଧାନ୍ୟ


**ଇଂରାଜୀ:**

1. Bates, H.E. The Modern short Story. London 1941
2. Beachcroft, T.O., The Modest Art : A Survey of the Short Story In English; London, 1968
3. Mathews, Brander., The Philosophy of the Short Story; New York, 1941
4. O' Connor, Frank., The Lonely Voice : A Study of the short Story; New York. 1963.
5. O' Faolin, Sean, The Short Story; N.Y. 1951
6. Summers, Halls. (Ed) Discussions of the Short Story ; Boston, 1963
7. Reid, Ian., The Short Story, Methun & Co London. 1977

**ହିନ୍ଦୀ :**

୧. ପ୍ରେମ୍‌ଚାନ୍ଦ୍, 'କୁଛ୍‌ବିଚାର', ସରସ୍ୱତୀ ପ୍ରେସ୍, ଏଲାହାବାଦ ।
୨. ଶର୍ମା, ଜଗନ୍ନାଥ ପ୍ରସାଦ, କହାନୀକା ରଚନା ବିଧାନ, ହିନ୍ଦୀ ପ୍ରଚାରକ ପୁସ୍ତକାଳୟ ବାରାଣସୀ, ୧୯୬୧
୩. ବଟରୋହୀ, କହାନୀ ରଚନା : ପ୍ରକ୍ରିୟା ଔର୍ ସ୍ୱରୂପ୍, ଅକ୍ଷର ପ୍ରକାଶନ୍ ପ୍ରା.ଲି : ୧୯୭୩

**ବଙ୍ଗଳା :**

୧. ଦାସ, ଶିଶିର କୁମାର, ବଂଲା ଛୋଟଗଳ୍ପ; ଦେ'ଜ୍ ପବ୍ଲିଶିଂ, କଲିକତା-୧୯୬୩
୨. ଦତ୍ତ, ବୀରେନ୍ଦ୍ର, ବଂଲା ଛୋଟଗଳ୍ପ ପ୍ରସଙ୍ଗ ଓ ପ୍ରକରଣ; ରତ୍ନାବଳୀ, କଲିକତା ୯; ୧୯୮୫

**ଓଡ଼ିଆ :**

୧. ବେହେରା, ଡ଼ଃ କୃଷ୍ଣଚରଣ, 'କଥାସାହିତ୍ୟ', ସାଥୀ ମହଲ, କଟକ ୧୯୬୮
୨. ସାମଲ, ବୈଷ୍ଣବ ଚରଣ, 'ଓଡ଼ିଆ ଗଳ୍ପ : ଗତି ଓ ପ୍ରକୃତି', ସାଥୀ ମହଲ, କଟକ ୧୯୭୮
୩. ଦାସ, କିଶୋରୀ ଚରଣ, 'କଥାସାହିତ୍ୟର କଳା ଓ କାରିଗରି', ଇଷ୍ଟର୍ଣ୍ଣ ମିଡ଼ିଆ, ଭୁବନେଶ୍ୱର ୧୯୯୦
୪. ବାରିକ, ସୌରୀନ୍ଦ୍ର, 'ବାମନର ପାଦ' ଅଗ୍ରଦୂତ, ବାଙ୍କାବଜାର, କଟକ ୧୯୯୧
୫. ସାମଲ, ବୈଷ୍ଣବ ଚରଣ, 'ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସ' (୧ମ ଖଣ୍ଡ), ବୁକ୍ସ ଏଣ୍ଡ୍ ବୁକ୍ସ, କଟକ ୧୯୯୦